# ୧୯୭୦ କବିତା





ପଦ୍ମଶ୍ରୀ ଡକ୍ଟର
ଲକ୍ଷ୍ମୀନାରାୟଣ ସାହୁ

# ୧୯୭୦ କବିତା

ପଦ୍ମଶ୍ରୀ ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ
ଏମ୍. ଏ. ଏଲ୍. ଏଲ୍. ଡି.



(ପ୍ରଥମ ମୁଦ୍ରଣ)

ଏକାମ୍ର ପ୍ରେସ୍
ନିଉକ୍ୟାପିଟାଲ ଭୁବନେଶ୍ୱର
୧୯୭୦

ମୂଲ୍ୟ ୧ ।   (ଏକଟଙ୍କା ମାତ୍ର)

ଯାହାଙ୍କୁ ଯାହାଙ୍କୁ ଭବ ଏହି ସବୁ କବିତା ଲେଖିଛି
ସେହିମାନଙ୍କୁହିଁ ଏହି ବହି ଟି
ଉତ୍ସର୍ଗ କଲି ।

# ୧୯୭୦

ଅନାଘ୍ରାତ ପୁଷ୍ପ ଦେବତା ଶିରେ ଅବା
ଦେବତା ଚରଣେ ଅର୍ପି ପାର
ତେଣୁ କାମିନୀ ! ଅପେକ୍ଷା କର
ଦେବତା ପାଇଁ, ତାହିଁ ପର
କିନ୍ତୁ ନାହିଁ, ନାହିଁ, ଆଜି କାହାରିକୁ
ଅର୍ପିବାର ନାହିଁ ।
କଠୋର ନିୟମ ଶାସ୍ତ୍ରକାର ମାନଙ୍କର—
ହେଉ, ରୁଦ୍ର—ଯଦି ପାର
ଜୀବନରେ ସେହି ଆଦର୍ଶ ଧର
ଭୀଷଣ, କଠୋର—ତଥାପି ହୁଏତ
ପରେ ମଧୁର ।



ସଂଯୁକ୍ତା ମହାନ୍ତି ପାଇଁ

ସୁରପୁରେ ଥାଇ ନିତ ମା' ଙ୍କୁ କରୁ ଯେଉଁ କାରବାର ।
ମୁଁ ହତଭାଗା ବୁଝିବି ବା ତା କେଉଁଠି ?
ଅନୁଭବିବ ବା କାହୁଁ ସେହି ଦୂର, ଦୂର ସୁରପୁର ?
ରାଗିଣୀରେ ଭରି ମୂର୍ଚ୍ଛନା ଢାଳ ତୁ ଯାଉ
ଯେତେବେଳେ ମର୍ମପୁରେ
ମୁଁ ରହିଯାଏଁ ପଛରେ, ବହୁ ପଛରେ ।

ଅଭାଗା ଜନ ମୁଁ ଯେ ରେ
ତଥାପି ମା ତୁ ଦେଇ ଯେଉଁ ଆନନ୍ଦ,
ତାହା ଲଭିବାର ପାଇଁ ଆଶାୟୀ ହୋଇ
ରହିଛୁ ମୁହିଁ ଏକାନ୍ତରେ ଏହି ଭୁବନେଶ୍ୱରେ
ଭଜୁଛୁ ବସି ମା ତୋତେ ତୋ ମର୍ମପୁରେ,
ମୋ ମର୍ମ ପୁରେ ।

---

ବାରୁଣୀ ! ନବବର୍ଷର ଆରମ୍ଭେ ତୁ ଦେଇଛୁ ଯେଉଁ ଉପହାର
ତା ରହିବ ଚିରକାଳ ମୋ ଅନ୍ତର ଭିତର—
ଏତେ ସୁନ୍ଦର, ଏତେ ସୁନ୍ଦର, ସେ ପ୍ରତିକୃତି,
ଆହା ସେ କେଉଁ ଭବାନୀର ?
ସେହି ଭବାନୀ ନାହିଁ ସତ,
କିନ୍ତୁ ଅଛି ଏହି ଚିତ୍ର ।
ତାହାର ଭିତରେ ରହିଛି ସେ ହୋଇ ଅମର ।
ମୁଁ ମଧ୍ୟ ତେବେ ତୋହର ଭିତରେ ଭଗିନି
ହେ ଇ ପାରେ ସଦା ଅମର,
କି ଭାଗ୍ୟ ନହେବ ମୋହର !
ଚିର ଜାଗ୍ରତ ରହ ଭଗିନୀ ତୁ ମୋ ଅନ୍ତର ଭିତର ।

—o—

ଶାନ୍ତ,
ତୋତେ ଦେଖି ନାହିଁ ଆହୁରି ଭଲ କରି—
ଦେଖିବ ଧୀରେ, ଧୀରେ, ପଶିବ ସଦା ବା ତୋ ଅନ୍ତର ପୁରେ ।
ତୁ ଅତି ସ୍ନେହମୟୀ ମା,
ଟିକିଏ କଥାରେ ହୋଇଯାଏ ତୋର ଆଖି—

ଛଳ, ଛଳ,
ଯେଦ୍ଦ୍ନେ, ବରଷା ଆକାଶେ ଘରଦ ମାଳ; ମାଳ;
ସରସ କରିବ ତୋହର ଜୀବନ କେତେ ଅଭାଗା ଜନ,
ଏତିକ ଥାଉ ଆଜ ଏତକ ପୁଣି ଦେଖା ହେଲେ ହେବୁ କେତେ କଥା
ହସି ମୁରୁକ, ମୁରୁକ ।

---

ଆହା ! ଆହା !
ପଥର ନୁହେ ତାହା
ଜୀବନ ଭରିଛି ଅଙ୍ଗେ ଅଙ୍ଗେ ପ୍ରତିଅଙ୍ଗେ
ଅନବଦ୍ୟ ସେ ପାଣି, ଧନ୍ୟ ସେ ବନ୍ଧାଣୀ,
ଲପନ କରିଛି କେଉଁ ଶୋଭିବନ,
ଜୀବନ, ଯୌବନ, ମାନସ ମୋହନ
କାଳ ପାର ହୋଇ, ହୋଇଛି ଛିଡ଼ା,
ପଥିକ ! ରୁହ, ରୁହ, ଫେର ଫେର ଗୃହଁ
କେଉଁ ମନ ଭିଡ଼ା
ଅନଙ୍ଗ କୁମାରୀ, ଭୂଷଣ
ଅଙ୍ଗେ ଅଙ୍ଗେ ଭର
ହାତେ ଲତା ପାଖୁଡ଼ା
ଆହା ! ମୁଖରେ ହସଭର୍ ।
ବିମୁଗ୍ଧ ମୁହିଁ
ତାହାର ଠାରେ ତାହାକୁ ପାଇ ।

## ଛବି

ଆଯାଚିତର ସ୍ନେହ ପାଶେ ବନ୍ଧା କିଏ ନହେବ କହ ?
ସେବାର ମର୍ମପୁରେ ଯେ ରହି ସେବା କରେ ଅହରହ
ସେ ତ ମାନବୀ— ଖାଲି ମାନବୀ ନୁହେଁ, ଦେବୀ
ଖାଲି କି ସେତିକି ?— ସେ ଯେ ବାନ୍ଧବୀ
ବାନ୍ଧି ରଖେ ପ୍ରାଣ ତା'ଠାବରେ— ରୁହେ ସେ ମୋ
ମର୍ମ ପୁରେ

ଝିଅ ! ତୁ କିଏ ମା କହ,
ତୁ ପରି ମୋ ପରାଣ ଶୀତଳ କରି
ମଧୁରି, ସୁନ୍ଦରି, ଶୁଭ୍ର ବିଲେପନ କରି
ମୁଁ ମରି ମରି ଯାଏଁ ତାହାରି ପାଇଁ
ସେ ଥିଲେ ମୋ ମରଣ ଜୀବନ ପାଏ ଭାଇ
ସେ ଛବି, ମର୍ମକବି, ସ୍ନେହ ପରି,
ମୋ ମରଣ ପାଏ ଯା'ଠାରେ ଜୀବନ
ସେହି ମୋ ଛବିଟି ଜାଣ ।

---

## କମଳା ପାଇଁ

ମୋହର ଭଉଣୀ ମୋହଠୁ ପାଶେ ଆସେ
ସକଳ ପରାମର୍ଶ ନେବା ପାଇଁ
ଏକାକୀ ଖେଳେ ଜୀବନ ପଥେ ଭୁଲି ସେହି
ତଥାପି ରହୁଁଛି ତ ସେହି
ଆହସ ଭରି ସକଳେ ଉପକାର କରି
ଛଳନା ନାହିଁ

ସେହି ମୋ ଭଉଣୀ ରାଣୀ ନୁହେଁ,
ନୁହେଁ ଗୃହରାଣୀ,
ଦୁଇ ମଧ୍ୟେ ଥାଇ ସକଳର ସେବା ସେ କରଇ,
ଆପଣାକୁ ତ୍ୟାଗକରି କ୍ଷୁଦ୍ର ନ ହୋଇ ।

---

ସାନ ଧଡ଼ ପାଇଁ
ସେ ତ ଭଡ଼େ ନାହିଁ ଏତେ
ମାତର ସ୍ନେହରେ ଜଡ଼ିତ ସେ, ମିଛ ନୁହେ କେତେ
ବଡ଼ୁଛି ସେହି ଭାବଧାରା ବହି
ଜଗତ ପୁରେ ପିତା ତାହାର କେତେ ଆଶା ବହଇ
ବଡ଼ୁଛି ସେହି ଦନୁଁ ଦନ
ଜ୍ଞାନ ଗୁଣେ ହେଉ ଧନ୍ୟ
ଏତକ ଭରସା କରୁଛି ମୁହିଁ
ଧଡ଼ ଭଲକରି ପାଠ ପଢ଼ିବୁ ତୁହି ।

---

କୁନା ପାଇଁ

ଭଲ ହେବୁ ତୁ ଭଲ ହେବୁ
କେତେ ଗୁଣ ଶିଖିଛୁ, ଆହୁରି କେତେ ଶିଖିବୁ,
ପର ପାଇଁ ତୋ ଗୃହର,
ଏହା ବଡ଼ ମଧୁର, ସେବା କରିବାର ମର୍ମପୁର
ତୁ ଜ୍ଞାନ ଗୁଣ ଅଧିକୁଁ ଅଧିକ ଭରିଲେ ଦେହରେ
ସକଳେ ହେବେ ଖୁସି କହିବେ ବାହା ବାହାରେ
ସକାଳୁ ଉଠେ ପୂରୁବ ଗଗନେ ଯେଉଁ ସୂରୁଯ

ତାହାର ସାଥେ ଉଠିଣ ତୁହି, ତାହାର ପର କାମ କରିଯା ଭଇ,
ସକଳେ ହେବେ ଖୁସି, ଆଦର
କରିବୁ ପୂରଣ ଆପଣା ଜ୍ଞାନରେ ଭରି ଉଠିବୁ ତୁହି ।

---

## ଆଦିବାସୀ ପଢ଼ୁଆ ଝିଅ

କିଏ ଗଲା ଭୁଲି କାହିଁ ?
ଜଣା ପଡ଼ୁ ନାହିଁ, ମୁଁ କେବଳ ଆଶାୟୀ ହୋଇ
ତାହାର ପାଶେ ବସିଛି ରହି
ଭାବୁଛି କେତେ ମତେ
ସତେ କି ଏ ଜୀବନ୍ତ ଗାନ୍ଧର୍ବୀ
ଦେଖା ଦେଲା ମୋତେ
ସ୍ୱପନେ ମୋର ରହିବ ସେହି
କିମ୍ବା ଯିବ ଦୂର ଦୂର ଗମ୍ଭୀର ଗଣ୍ଡି ବାହି,
ଆହା ! ଆ ଆ ତେବେ ମୋ ଅନ୍ତର ପୁରେ
ରହିଯା ସେଥି ଚିର କାଳ ପାଇଁ ।
ଭଗିନୀ ଦେଉଛି ମୋତେ ତୋତେ
ସତେ କି ଅଲୌକିକ ବିବାହ ବନ୍ଧନ ପାଇଁ ?

---

ଛବିରୁ ବାହାର ଆସୁଛି ସେ ମାଆ ଗୋ
ଜୀବନ୍ତ ମୂରତି ବହି,
ଲପନେ ତାହାର ସୁଷମା ଭାର
ଜଡ଼ିତ ଅଙ୍ଗେ ମହା ଆକର୍ଷଣ ଯାର
ସ୍ୱର୍ଗ କି ଠାଣି ! ମନୋରମ ଜାଣି, ଦେଉଛି ତାକୁ ମୋ ଭଗିନୀ,

ସେ ଯେ କଳଙ୍କ ବନ୍ଧାଣୀ ଗଢ଼ିଛୁ ଯେ ମନ ପଘାଇ
ପାଷାଣ ଭିତରୁ କରଛୁ ବାହାର ଅନଙ୍ଗ ହେମ ହାର
କର୍ଣ୍ଣ ଫୁଲ ଅନୁରୂପ, ଓଠରେ ହସ ରସ ପୂର
ଲେଖିଯାଏ ମନ ପ୍ରାଣ ତହିଁ, ନାସ୍ତି ବକ୍ଷ ଯାହାର ମନୋରମ ଦଶଇ
କ ଅନଙ୍ଗ ଠାଣି ଆପଣା ଭିତରେ ମୁଗ୍ଧ ହୋଇ
ରହିଛୁ ଦଣ୍ଡାୟମାନ ଯେହ୍ନେ ତ୍ରସ୍ତକ୍ଷମାନା ସେହି
ଆପଣାରେ କାହାରେ ଅର୍ଜିବାର ପାଇଁ ।

---

ସେହି କ ମରଣ ହେବ ଏତେ ଭଲ ?
ଶୋଇଥିବ, ଆଉ ଉଠିବ ନାହିଁ ଜାଣ,
କେହି ଦେଖିବେ ନାହିଁ, କେହି ଜାଣିବେ ନାହିଁ ।
ଯିବ ଏ ଜଗତୁଁ ଅପସରି ମୁହିଁ
ଅବା, ଥିବେ ସବୁ ସଖା ସଖୀ ବେଢ଼ି
କହୁ ଥିବ କଥା ଅନ୍ତର ଭରି.
କହୁଁ କହୁଁ କଥା, ଯିବ ଜୀବ ଚ୍ଛଳି ?
ଅବା ଯନ୍ତ୍ରଣାରେ ଯେବେ ହେଉଥିବ ଛଟପଟ
କେତେ ମୋର ସେବା କରୁଥିବେ ସବୁ ପ୍ରାଣ ମିତ,
ସେହି ସବୁକୁ ଦେଖି ଦେଖି ପ୍ରାଣ ଯିବ ଛୁଡ଼
ଚ୍ଛହିଁ ରହିଥିବେ ସେମାନେ, ଯାଉଥିବ
ଅବା ମୁହିଁ ଚ୍ଛଲି ଚ୍ଛଲି,
ସେମାନଙ୍କ ହାତ ଧରି, ଚ୍ଛହିଁ ସେମାନଙ୍କ ଆନନ ଭରି ।

---

ତୋହର ଆଶାରେ ରହି ରହି ବେଦନା ପାଇଲି ଶତ ଶତ
ତୁ ରହିଲୁ କୁଆଡ଼େ ଯାଇ, ମୋହ ପାଶରେ ନ ରହୁଚ ।
ଆସୁ ଖାଲି ଦେଖାଦେଇ ଚାଲି ଯାଉ, କେଉଁଠେ ଚଳଚଳ ହୋଇ,
ତାହାର ଭିତରେ ଆଶା ନିରାଶାର ତେଜ ଯେ କେତେ ଖେଳଇ
ଦିବସ ପ୍ରାନ୍ତେ ବସି ରହେଁ ଯେତେ, ନିଶୀଥେ କେବେ କେତେ
ଜୀବନ ଯାହାର ଦୁଃଖମୟ, ସୁଖ ପାଇବ ସେ କେମନ୍ତେ
ହଉ, ଏହିମତ ଜୀବନ ଯାଉ—ରହି ରହି ଅପେକ୍ଷାରେ
ବିଜୁଳି ଦେଖା, କରମ ଲେଖା, ଆଉ କହିବି କାହାରେ,
ମୋ ପରାଣ ପୋଡୁ ଏହିପରି ଜ୍ୱଳି ପୋଡ଼ି ଜ୍ୱଳି ପୋଡ଼ି,
ତୁ ଖାଲି ଆସି ଦେଖା ଦେଇ ଚାଲି ଯାଉଥା,ମୋ ଅନ୍ତର ମାଡ଼ି ।
ଦଗ୍‌ଧ ଜୀବନରେ ଆଉ ଆନନ୍ଦ କାହିଁ କହ
ଶୁଷ୍କ ହୋଇଛି ସକଳ ତନୁ ମରଣ ପାଇଁ ଦହ
ତଥାପି ଭାବେ ରସ ଦେବ କେହି ଅବା
ଆଉ ଦି'ଦିନ ବଞ୍ଚିବା ପାଇଁ ଚାହିଁ ରହିବା ।

---

ମର୍ତ୍ତ୍ୟପୁରେ ବାସ, କେତେ ହାସ, କେତେ ଦୁଃସାହସ,
କେତେ ବ୍ୟଥା, କେତେ ଆନନ୍ଦ, କେତେ ରସ,
ଜୀବନ ଯୌବନର ମହାବିଳାସ
ପୁଣି ତନ୍ୱୀର କାତରତା, ବିମୁଖତା, ଶାନ୍ତ ନିମେଷ ନିମେଷ,
ମର୍ତ୍ତ୍ୟପୁରେ ବାସ, ଅମୀୟ ବରଷ, ପୁଣି ବିରକ୍ତ ସନ୍ୟାସ
ମର୍ତ୍ତ୍ୟପୁରେ ବାସ, ଆସ, ଆସ, ରସରସ ମର୍ତ୍ତ୍ୟପୁରେ ବାସ,
କୋକିଳ ଡାକୁଛି, ବସନ୍ତ ଆସୁଛି, ଆସୁଛି ଉଲ୍ଲାସ ।
ମର୍ତ୍ତ୍ୟପୁରେ ବାସ, କେତେ ସଖା ସଖୀ କେତେ ପ୍ରାଣ ପୀୟୂଷ

ମର୍ତ୍ତ୍ୟପୁରେ ବାସ—ଆସ, ଆସ, ଏ ଜୀବନର ମଧୁଲୁଣ୍ଠ
ନ କର ସନ୍ନ୍ୟାସ
ମର୍ତ୍ତ୍ୟପୁରେ ବାସ, ଶୁଣ ଶୁଣ କେତେ ଡାକେ କୋକିଳ ବାୟସ
ମର୍ତ୍ତ୍ୟପୁରେ ବାସ, ରସ, ରସ, ରସୋ ବୈ ସଃ ! ଏଥି ନାହିଁ
ସନ୍ନ୍ୟାସ ।
ଏଠି ରାସ ରଚ, ରଜ ହାସ, ସୁବାସ, ଆଣ ପୁଷ୍ପହାସ
ମର୍ତ୍ତ୍ୟ ପୁରେ ବାସ, ମଧୁକର ସଞ୍ଚୟ, ଦାନ କର ଅହରହ
ପ୍ରେମ, ପ୍ରୀତି, ଚନ୍ଦନ, ସୁବାସ, ଆରତି, ରତି, ହାସ
ମର୍ତ୍ତ୍ୟପୁରେ ବାସ, ଆସ, ଆସ ଆଜ ଦିବାନ ରଚ ରାସ ।

---

ଜଗତ ଜତା, ପୁରୁଷ ପିତା, ଭୂଲ୍ ନ ନାଶି
ଏ ଭୁବନେ ବୁଲୁ
ଏ ଜଗତ ନୁହଇ ତୋହର, ଯାଉନାହୁଁ ବାହାର
ଜଙ୍ଗଲ ଆଡ଼କୁ
ତୋତେ କହୁବ କସ, ତୁ ମନରେ ଗୋଟିଏ, ବାହାରେ ଗୋଟିଏ,
କଥା ଦେଖାଉ
ତୋହର ମନ ବଳବା ପାଇଁ, କୌତୁକ କର ସହି ସଙ୍ଗେ ଜଣାଉ
ଜଗତ ଜତା, ପୁରୁଷ ପିତା, ଏ ମିଛ କଥା,
ଭୂହି ରହିଛୁ ସେଇଥିରେ ।
ବାହାରେ ଦେଖାଉ କାହା କାହା ଠାରେ
ନିଜକୁ ଭିନ୍ନ ରୂପରେ ।

---

ରୋଗୀ ଲୋକ ସବୁ ଲୁଚି ଯାଅ ଘରେ,
ରୋଗୀ ଲୋକଙ୍କୁ ଦେଖି ଦେଖି ଭଲ ବି ହୋଇ ଯିବେ ରୋଗୀରେ

ତେଣୁ ହୁଅ ସବୁବେଳେ ସୁସ୍ଥ ସବଳ
ମନ କର ବିମଳ, ହୃଦ କର କମଳ ।
ଚାଲ ସବୁବେଳେ କରି ଆନନ୍ଦ ଖେଳ ।

---

ବଡ଼ ଉଦାସିଆ ଲାଗେ
ଭାବେ ମନେ ମନେ
ବଞ୍ଚିତା ମୁଁ ଅଗ୍ରଜ ସ୍ନେହରୁ
କି ଲୋଡ଼ା ଏ ଛାର ଜୀବନେ ।
ପ୍ରାଣ ମୋର କାନ୍ଦେ କଇଁ କଇଁ
ଦେଖିଲେ କା' ଭାଇ ମୋର କେହି ନାହିଁ !
× × ×
ଜାଣେ ନା ମୁଁ ଜାଣେ ନାହିଁ ସତେ
ଏତେ ସ୍ନେହ ପୂରିଛି ସଂସାରେ
ଆସେ ନାହିଁ କେବେ ମୋର ପ୍ରତେ,
ବନ୍ଧୁ ଲୋକ ସେ,
ଆଜି ମୁହେଁ ମୋର
କୁହନ୍ତି ଭଉଣୀ
କାଲି ଯିବେ ଅନ୍ୟଠାବେ,
ଭୁଲିଯିବେ ମୋତେ
ପାଶବେକ ଚାହ୍ନି ।
କିନ୍ତୁ ଏ କି ଆଚମ୍ବିତ
ନିଜ ଭାଇଠାରୁ ଅଧିକ ସ୍ନେହ ପାଏ ମୁହିଁ
ହୁଏ ମୁହିଁ ମୁଗ୍ଧ
ଆଜି ମୋର ଭାଇ ଲୋଡ଼ା ନାହିଁ—ବାରୁଣୀ ।

---

ତୋତେ ରଖିଛି ଗୃହିଁ, ରହିଛି ଗୃହିଁ,
ମୁଁ ହୋଇ ଯାଉଛି ଭୁହି,
ତୋତେ କେତେ ରହିଛି ଗୃହିଁ,
ଅନମେଷ ନୟନେ, ତୋହର ଧିଆନେ
ମୁଁ ହୋଇ ଯାଇଛି ଭୁହି ।
ବିଶ୍ୱାସ କରିବୁ କି ମୋତେ
ମୁଁ ଏବେ ନାହିଁ ଏକା, ରହିଯାଇଛି ତୋ ସାଥେ
ଅନ୍ତର ଅନ୍ତର ତୋହର ମୋହର ଏକ ସାଥିର
ରୂପଟି ମାତର ଅଛି ତୋହର, ମୁଁ ଲୁଚ ଯାଇଛି ଲହିଁ ଭିତର
ତୋତେ ରହିଛି ଗୃହିଁ, ରହୁଛୁ ଗୃହିଁ, ରହିବ ରହିବ ଗୃହିଁ,
ବାରେ, ବାରେ, ଏ ଜୀବନେ ମୋର ଆଉ କିଏ ଅଛି ? କେହି ନାହିଁ ।
ତୋତେ ଦେଖିବ ବାରେ ବାରେ, ଯେବେ ନଥିବୁ ମୋ ପାଶର
ଛବି ଦେଖି ଦେଖି ତୋହର ହୋଇଯିବ ମୁହିଁ ତୋହ ପ୍ରକାର
ଆଉ କିଛି ଅଭିମାନ ନାହିଁ ମୋହର, ପାଇବ ତୋତେ
ଜୀବନ ଭର
ଏହି ଆଶା ଅଛି ଅନ୍ତର ଯେତେ
ଚିର କାଳ, ଚିର କାଳ, ଏହି ଚିନ୍ତା ରହୁ ଚିତ୍ତେ ପ୍ରସର ।

---

କାହିଁକି ଲାଗିବ ତୋ ଉପରେ
ତୁ ଅବା ପଡ଼ିଲୁ ମହାଦୁଃଖରେ
ଗଭୀର ତୋର ହୃଦୟ ଭିତରେ
କି ଆଲୋଡ଼ନ ହେଉଛି ଅବା
ଜାଣେନି ମୁଁ-ଜଣାଉ ତ ନାହୁ ତୁ
ହଉ, ହଉ, ମନକଥା ମନରେ ରଖି

ମୋତେ ଜଗତରେ ଜଗତେ ରଖି
ଭିତରେ ଯିବାକୁ ନ ଦେଇ
କେବେ ଯୋଗ୍ୟ ହେବ ଭିତରେ ଯିବାକୁ
ସେହି ଯୋଗ୍ୟ ଧନକୁ ଅବା ତୁହିଁ ରହିବ
ଅବା ଦେଖିବି କାହିଁକି ତୋତେ କେଉଁ ପ୍ରକାରେ
ଦୋଷ ଅଛୁ ମୋହଠାରେ—
ମୋର ଦୋଷ ମୋହର କ୍ଷତି କରେ—
ତୁ ଆଉ ମୁଁ ଅବା ଭିନ୍ନ ନୋହୁଁ
ତଥାପି ତୁ ଅନ୍ତର ଗୁପ୍ତି ରଖୁ ମୋତେ ଜାଣିବାକୁ ନ ଦେଇ ।

---

ସୁରମ୍ୟ ପାରେ ଝଙ୍କାରେ ଯେଉଁ ହାହା ସ୍ୱର
ସେହିଠାରେ ଭେଟ ତୋହର ମୋହର
ସେହିଠାରେ, ସେହିଠାରେ—ଆଉ କଥା ନ ବାହାରେ,
ଖାଲି ରହେଁ ଚାହିଁ ଆକାଶକୁ, ଚାହିଁ ରହେଁ ତହିଁ,
ଦେଖେଁ ତୋ ଛବିକୁ
ଆଜ ଯଦ କେବେ ଦେଖା ନ ହେବ
ଚାହିଁ ରହିଥିବ ସେହି ଆକାଶକୁ
ତହିଁ ତାରକି ପାଶେ ଥୋଇଣ ତୋତେ ଦେଖିବ କେତେ
ଶିହରିବ ପୁଣି ଥରକୁ ଥର—
ସେହି ମୋର କଲ୍ୟାଣ ହେବ—ଆଉ କଲ୍ୟାଣ ନାହିଁ
ମୋ କପାଳରେ ।

---

ତୁ ରହିବୁ ଏପରି ଦୂରେ ଦୂରେ
କେବେ ଦେଖା ଦେଲେ ବିଦ୍ୟୁତ ବେଗରେ

ଭୁଲିଯିବୁ ତୁହିଁ ଚୁହାଣୀ ଏଡ଼ାଇ
ଆଜ ମର୍ମ ପୁରର ଯିବାକୁ ଦେବୁ ନାହିଁ ।
ଏହିକ ନହଲ ଶେଷ ଜୀବନ ମୋର
ହାୟ ହାୟ କରି ପ୍ରାଣ ଯିବ — ଖାଲି ବରହର
ମଯୀରେଖା ଢୋଳା ହେବ, ହେବ ଅନ୍ଧକାର ?

---

ସୁର ଜଠେ ନା, ସୁର
ହଜି ଯଡ଼େ, ଅଲହୂର
ମନର ସୁର ମନରେ ଗୁମରେ
ଜଗତ ଜାଣେନା ସେ ସୁର
ତଥାପି ଯେହୁ ସୁରେ ଅନ୍ଧ ହୋଇ
ମୁଁ ଧାଇଁଛି ଦୂର, ଦୂର
କଅ ବଣରେ କରୃଢ଼ ଯଡ଼େଁ
ହୁଏଁ ଲନ୍ଥ ଲହାଣ
ଫେରି ଆସେ କାନ୍ଦ କାନ୍ଦ
ପାଏ ନାହିଁ ମୁହାଣ
ସୁର ଜଠେନା ଅନ୍ତରେ ଗୁମରି ରହେ
ଆକାଶ ପାରେ ଯାଏ ନା ସେ
ଦେଖେନା ସମୁଦ୍ର ମୁହାଣ
କି ଅପରାଧେ ମୋର ସୁର ଜଠେନା ଜଗତ ପାରେ
ଅନ୍ଧ ସମ ଘୂରି ବୁଲେ ଖାଲି ମୋ ସ୍ୱରେ ଅଡ଼େ ।

---

କେତେ ଗବୁଛୁ ହୃଦରେ କାଉ
ଆଜି କିଏ ଅଛୁ ମୋର
କିଏ ଆସିବ ଆଜ
ସବୁତ ଗଲେଣି ସ୍ମୃତି ସେପାର
ଆଜ କି ମନେ ଅଛଇ ଆଜ
କେତେ ଜନ୍ମାନ୍ତରର କଥା, କେତେ ବିବର୍ତ୍ତନ ବାଟି
ଆଜ କି ମନେ ଅଛୁ ମୋର
ଅହଲ୍ୟା ପାଷାଣୀ ହୋଇ ରହିଥିଲି ଅବା ମୁହିଁ
ସେହି ଦିନ କଥା ଆଜ ମନେ ନାହିଁ
ତଥାପି ତ ଜ ତୁ ଅଛୁ କାଳ ସାକ୍ଷୀ
ସବୁ ଦେଖୁଛୁ କାଳ ପରି ତୋର ଆଖି
ତୋତେ ହିଁ ତୁହିଁ ଆଣିବୁ ଯା'କୁ ବୋଲି
ସେହି ହେବ ମୋହର ଜନ୍ମ ଜନ୍ମାନ୍ତର
କଳ୍ପ କଳ୍ପାନ୍ତର
ସେତ ମୁହିଁ—ଆଜ କେହି ସାକ୍ଷୀ ନୁହେଁ, ଆଜ କେହି ନାହିଁ ।

---

ପ୍ରଥମ ଦିନର ପ୍ରଥମ ସଂବେଗ
ସେ ନବୀନ ସଂବେଗ
ପ୍ରତ୍ୟାଶୀ ହୋଇ, ବସିଛୁ ସେହି,
କେତେ ଭାବନା ମନେ ଆସଇ ଧାଇଁ,
ଆଗୋ ଆସଇ ଧାଇଁ
ଛୁଇଁ ଦେଲେ ଅଙ୍ଗ ପୁଲକ ପାଏ ସେହି
ପୁଲକ କି ମୁଁ ପାଏ ନାହିଁ ?
ପ୍ରଥମ ଦିନର ସେ ପ୍ରଥମ ସଂବେଗ

ସେଥି ପାଇଁ କେତେ ଆବେଗ
କେତେ ବ୍ରତ ପାରଣା, ତପସ୍ୟା ଜଣା,
ହେ ମହାଭାଗ ! ତୁମେ ଅଟଗୋ ମୋ ଅଜଣା,
କହ୍ନୁ, ଏଣିକ ତନୁ ମନ ସବୁ ସମର୍ପଣ
କଲ୍ ଯେଉଁ ଠାରେ
ରହିବ ଚିର ଦୁଃଖେ କୌମୁଦୀ ହାସେ,
ଏହି ବିହ୍ୱବଶ ଚିନ୍ତା
ଏବେ ଧାରଇ ମୋତେ ରହିବି ଚିର
ତବ ଚିତ୍ତ
ରହିବ ଅକଟି ତୁମକୁ ସଂପଦେ ବିପଦେ
ଏହି ତପସ୍ୟା ମୋର ହେଉ
ଉଦ୍‌ଯାପନ ଆନନ୍ଦେ, ଆନନ୍ଦେ ।

---

ତୁମରି ଆଶୀର୍ବାଦ ଏବେ ଗୋ
ପଥର କେହୁ ଫିଙ୍ଗିଲେ ମୋତେ
ହୋଇ ଯିବ ସେ ଫୁଲ ହାର
କ୍ରୋଧରେ କେହି ଅଗ୍ନି ବରଷିଲେ
କୁଙ୍କୁମ ଲେପ ହୋଇବ ମୋହର ହୃଦରେ
ମୁଁ ପରା ରହିଲିଣି ତୁମ ସାଥେ
ଜନମ ଜନମ କେତେ ଜନମ ଧରେ
ଏ ସବୁରି ଭିତରେ ତୁମର ମୋହର ଲୁଷାଲୁଷି ଯେତେ
ସବୁ ଆମର ପରସ୍ପରର ଭଲପାଇଁ ଏହା ମୁଁ ବୁଝେ
କେବେ ବୁଝେ, ନାହିଁ ଏତେ,

ତଥାପି ତୁମେ ମୁଁ ଚିର ଜୀବନ ସାଥୀ
ମରମେ ମରମେ ରହିଛୁଁ ଆମେ ନୋହୁଁ ସ୍ୱାର୍ଥୀ
ଆଶୀର୍ବାଦ କର ମୋତେ, ତୁମେ ନୁହ ଅହଲ୍ୟା
ପାଷାଣୀ ବୁକୁ ଯେତେ
ସବୁ ଶୋଷୁଛ ତୁମେ, ଶୋଷୁଛ ମୋତେ,
ପ୍ରତିଦିନ ଏହିମତେ ।

---

ମୂର୍ଖ ମୁହିଁ ହେ ଭବ ଶେଖର
ଜଡ଼ ମୁହିଁ—ଚୁମ୍ବିତ ହୁଏ ଯେବେ
କମଳିନୀ ଦେଖିଣ ସୂର୍ଯ୍ୟ ତପୋଧନ
ନାଚିବ ତେବେ କମଳିନୀ ସହ ଆନନ୍ଦ ସମ୍ଭୋଗରେ
ଲକ୍ଷ୍ମୀକାନ୍ତ ଦେଖିବ ଦୃଶ୍ୟ ଆଉ
କମଳିନୀ ସହ ହୋଇ କମଳିନୀ
ମୁଁ ଯେ ବଡ଼ ବ୍ୟଗ୍ର
ଆସ ଆସ ଆହେ ଭବ ଶେଖର
ଛୁଅଁ ମୋର ତନୁ, ମୁଁ ହେବ ପ୍ରଫୁଲ୍ଲା କମଳିନୀ,
ତବ ଚରଣେ ହେ ସୂର୍ଯ୍ୟସମ ଭବ ଶେଖର
ସମର୍ପିଣି ତୁମେ ମୋ ମାଳା ଉତ୍ତର ।

---

ଖଣିରୁ ଖଣିଜ, ଶୁଦ୍ଧି ପାଇଁ
ଯେମନ୍ତେ ଅପେକ୍ଷା କରଇ
ଅପର ଭାଉଗରର ହାତ,
ମୁହିଁ ତେମନ୍ତେ ଖଣିରୁ ଆଣିଛୁ ଖଣିଜ ମାତ୍ର
ବୁଧ ଜନେ ତାହା କେବେ ସଂସ୍କାର କର

ତେବେ ଫୁଟିବ ଅନାଘ୍ରାତ କଳିକା ମୋହର
ହେ କବି ! ହେ ଭାବୁକ, ମିଶିଯାଅ ଏକତ୍ର
କବି ଭାବୁକ ଅଭ୍ୟସ୍ତ ହେଲେ ମୋର କବିତାର
ମାର୍ଜନା ହେବ ମାତ୍ର
କିନ୍ତୁ କହିରଖେ ଖଣିକ ମୋର
ବହୁ ମୂଲ୍ୟର
ସେହି ଖଣିକ ଯୋଗାଉଛି ମୁହିଁ
ହେ ଭାବୁକ ରସିକ ସୁମାର୍ଜନା ଦଅ ତହିଁ ।
ଫୁଟିଲେ କଣ୍ଟକ ହାତେ
ମନ କି ଥୟ ମାନେ
ଧାଇଁ ଯାଏ ଗୋଲାପ ତୋଳିବାକୁ ଏଡ଼େ ମନ
କାହିଁକି କହିବ କି ?
ସୁନ୍ଦର ଦେଖିଲେ ଧାଏଁ କିନା ମନ ତହିଁ
ସୁନ୍ଦର ଗାନ, ସୁନ୍ଦର ରୂପ, ସୁନ୍ଦର ସ୍ୱର,
ସୁନ୍ଦର ବୃନ୍ତ, ସୁନ୍ଦର, ସୁନ୍ଦର, ସବୁ ସୁନ୍ଦର
ମନ ଥାଏ ରହିଁ ଯହିଁ ଅଛି ସୁନ୍ଦର
ସେ ସୁନ୍ଦରର ଅଧିକାରୀ ହେବାପାଇଁ
ସେ ସୁନ୍ଦରର ପରଶ ଲଭିବା ପାଇଁ
ମନ, ମନ, ମନ, ଯାଏ ଧାଇଁ, ବାଧା ନ ମାନି,
ବାଧା ପାଇଲେ, ରକ୍ତାକ୍ତ ହୋଇ
ଫେରି ଆସେ ସିନା,
ମାତ୍ର ଧାଏଁ ପୁଣି ତହିଁ—ସୁନ୍ଦରେ ଅବସାଦ କାହିଁ ?

---

ନୟନେ ନୟନେ ଭଙ୍ଗୀ ତୋର
ଦେଖି ବାର ବାର ମୁଗ୍ଧ ହୁଏ ମହିଁ,
ଛନ୍ଦ ପାଏ ତହିଁ
ବାଣୀ ଯହିଁ କହା ହୁଏ, ବାରମ୍ବାର ସେହି ବାଣୀ
ହେଲେ ତୋର ମୋର
ଜୀବନ ଅମର ଛନ୍ଦ ପାଏ
ଯହିଁ ବାଣୀ ନାହିଁ ଖାଲି ନିରୀକ୍ଷଣ
ବାର ବାର ନିରୀକ୍ଷଣ, ତହିଁ ମଧ୍ୟେ
ସେହି ଛନ୍ଦ ଅଛି ରହି
ଗତି ଅଟଇ ତ ଯହିଁ ଗତିହେଁ
ଛନ୍ଦ ଥିଲେ ମିତ୍ର ମୋର ସବୁ ସେହି
ସ୍ଥାବର ବା ଅସ୍ଥାବର, ଜଙ୍ଗମ ଅବା ସ୍ପନ୍ଦନହୀନ
ସବୁଠାରେ ସେହି ଛନ୍ଦ ବହେ, ମଳୟ ଯେହ୍ନେ ଆନନ୍ଦ ଦିଏ
ସେହି ଦର ସେହି ଛନ୍ଦ ଛନ୍ଦାଚରଣ ଠାରୁ ଆକାଶ ଶେଷ
ସବୁ ଠାରେ ସେହି ପ୍ରୀତି ଜାଗେ
ତହିଁ ଛନ୍ଦ ବହେ ।

---

ସପ୍ତ ଅଶ୍ୱର ସପ୍ତ ଖଣ୍ଡ ଜାତ ହେଲା
ପ୍ରାଚୀର ଭାଙ୍ଗିଲେ
ସପ୍ତ ଖଣ୍ଡ ରହିଲା ପାଶେ ପାଶେ
ମିଳିଲା ସେହି ସପ୍ତ ଖଣ୍ଡ ଧୀରେ ଧୀରେ
କିରଣ ଜାଲେ
ହୋଇଗଲା ଏକ—ଏହି ତ ସୂର୍ଯ୍ୟ ଅମର
ମୂଳରେ କିନ୍ତୁ ସପ୍ତ ଖଣ୍ଡ

ଏକାଠି ମିଶି ସୂର୍ଯ୍ୟ ହେଲେ ସେ
ତୁମେ ଆମେ ହଇ ଏହ୍ୱଯର ମିଳ
ହୋଇଯିବୁ ସିନା ମହାବଳୀ
ସପ୍ତ ଅଶ୍ୱର ସପ୍ତ ଖଣ୍ଡ ଆମେ
ଭିନ୍ନ ହେଲେହେଁ ଆମେ ଏକ
ଏକ ହେଲେ ଆମେ ମହାବଳୀ ।

---

ମୋହର ମନେ ଏନେ ପାଗଳ ହୋଇ
ଦୂର ନାହିଁ 'ଏତେ
ବେଳ ହେଲେ ମୁହିଁ ଜନେ ଆସିବ ଧାଇଁ
ତୁମର କଣ୍ଠ ଯେତେ
କାହିଁକି ଏତେ ବଜାଇବ ବାଜା,
କାହିଁକି ଏତେ ଉଡ଼ାଇବ ଧ୍ୱଜା
ବେଳ ହେଲେ ମୁହିଁ ଜନେ ଆସିବ ଧାଇଁ,
ମୁଁ ଯେ ତୁମର ଅଜା ।

---

ଜାଗର ବତୀ, ଜାଳନା ସଞ୍ଜ
କାହାପାଇଁ ? ସେ ତ ଭଲହେଲ ନାହିଁ,
ତେବେ ବ ଜାଳବ ଜାଗର ବତୀ ଚରକାଳ
ବଞ୍ଚି ରହିଥିବ ଯେତେଦନ ତାହାର ପାଇଁ ।
ସେ ଯେ ତୁମ ପତି—ତୁମେ ଯେ ସତୀ
ଅଉ ଯାହାର ପାଇଁ ଜାଳୁଛ ବତୀ, ହେଉଛ ଉଜାଗର

ସେ ତ ଭ୍ରମନ୍ତ ତୃଣ ଅଡ଼, ତଥାପି ମନ ଅଛି
ତୁମର ପାଇଁ
ନିଜାଗର ସ୍ୱପ୍ନ ଯାଚିଛ କେତେ ଯେ ସତ !
ମୋହର ପାଇଁ, ମୋହର ପାଇଁ ।

---

କେଉଁ ଯୋଗ୍ୟ ବର ଆଇଲ ହେ ତୁମେ
ବଚନ ସମ୍ଭାର ବୋଝ, ଜାଣେ ମୁହିଁ,
କିନ୍ତୁ କି କରିବ ଏଥି ? ଏ ନୁହେଁ ତବ ଉପଯୁକ୍ତ ସ୍ଥାନ,
ଯାହାର ଯହିଁ, ତହିଁ ରହିଲେ ସିନା, ଦିଶଇ ସୁନ୍ଦର,
କାହିଁକି ଏ ଅଭିମାନ ? କାହିଁକି ଏ ଆକାଂକ୍ଷା ?
ଖାଲି କି ପଇସା ପାଇଁ ?
ତେବେ ଜୀବନକୁ କଲ ହତ୍ୟା,କରିଛ ହତ୍ୟା,
ଆତ୍ମର କରୁଛ ହତ୍ୟା.
ତେଣୁ ଜୀବନ ଭୁମର ବାର ବାର ପଡ଼ି ପଡ଼ି ଚଳେ,
ଗନ୍ଧ ଶୁଙ୍ଘି, ଯାଉଛି ଶୁଖି ସେହି,
ବୃଥାରେ, ଏ ଆୟୋଜନ, ବୃଥାରେ ଏ ସ୍ଥାନ ଗ୍ରହଣ,
ଜୀବନ ନୁହେଁ ଏହା—ଆତ୍ମର ମରଣ ।

---

ଆଜନ୍ମ ଏତେ଼, ଭୁ ପାଣି ପଡ଼ଲେ ହେବୁ କେତେ଼,
ଛଇଳୀ—ଦ୍ଭୁ ଏତେ଼ ଛନ ଛନ, ସତେ ସତେ,
ବଢ଼ିଲେ ଭୁହ୍ୱ ବାଢ଼ୁଅ ହୋଇ, ଧରବୁ ଯେବେ ହାତ କାହାର,
ପଡ଼ଲେ ପାଣି, ଗଜଣି ଉଠିବୁ ଟଲେ କେତେ ଛନ ଛନ
ତା' କହି ବୁଦ୍ଧଇ ।
ଶୀର ତୋର ଫିଟିବ ଧୀର ଧୀର, ଫିଟୁଛୁ ତ ଧୀର ଧୀର,
କହିବ କେସନେ, ଭାବୁଛୁ ମନେ, କ କହିବ ମୁହିଁ ଜନମ ପାର ।

---

ପୂଜା ପାଠ କରେ ସେ
ଜାଣି ନ ଥିଲ ଏ କଥା
ଜାଣିଲ ଏବେ—ଜାଣିଲ ଆଜ
ଆଜ ମୁଁ ? ନାହିଁ ପୂଜା ମୋର, ନାହିଁ ଆରାଧନା,
ନାହିଁ କଛୁ ଭାବନା—
ଗୃଲଛୁ ଖାଲ ଆପଣା ପଥେ
କାହା ଇଙ୍ଗିତେ ଜାଣେ ସେହୁ
ମୋର କଛୁ ପୂଜା ଆରାଧନା ନାହିଁ ।

---

ଜୀବନ ପଥେ ଯୌବନ ପଥେ
ହେଲଣି ଗୋଡ଼,
ତଥାପି ରହିଛୁ ସେହି ଅପେକ୍ଷି
ବିବାହ ବାସର,
ମୁଁ କଲୁ ଗଲ ଯେବେ ତାହାର ପାଶେ
ଦେଖିବାର ଇଚ୍ଛା ମୋର ହେଲ ଯେ ସେ

କଏ ମୋର ? କାଲି ନ ଥିଲା ଜଣା, ଆଜି ମୋହର,
ହୃଦୟ କଣ୍ଠ ଆଲୋଡ଼ନ ଆସେ ତାର
ଦେଖିବ ତଂକୁ ମିବ ସେ ଶାଶ୍ୱତର
ଆହା ପରଶ କଲି, ଆଶୀର୍ବାଦଲି ମନେ ମନେ ମୋହର
ଏହି ତ ପ୍ରେମ, ଏହି ତ ସ୍ନେହ, ଏହି ତ ଜୀବନ ସାର,
ଆସିଥିଲୁଁ ତୁମେ ମୁଁ ହେ ପାଖା ପାଖି ହୋଇ
ଚାଲି ଗଲୁଁ ପୁଣି ଦୂରେ ଦୂରେ ଦେଖା ନାହିଁ
ପଲ୍ଲବ ପଲ୍ଲବିଲା ଯାହାର ପରଶ ପାଇ
ସେହି ବସନ୍ତ ଗଲା ଚାଲି ଆଜି କାହିଁ ?
ପୁଣି କି ଆସିବ ବସନ୍ତ ? ପୁଣି କି ଦେଖା ହେବ ଏମନ୍ତ ?
ମିଶିଯିବା ସାଥେ ସାଥେ କେତେ ଆନନ୍ଦ ହେବ ସତେ
ଏହି କି ସତ୍ୟ ? ଆଲୁଅ ଅନ୍ଧାର, ମିଳନ ବିରହ,
ଏହି କି ଶାଶ୍ୱତ ସତ୍ୟର ପ୍ରାଣ କି କୁଣ୍ଠ ହୁଏ
ପୁଣି ସ୍ଥିତ ହୁଏ ଅନ୍ତ
ମିଳନ ବିଚ୍ଛେଦେ ଏହିପରି ଗୋ
ମରଣ ମୋର ପୁଣି କେବେ ଜୀବନ ପାଇବ ଗୋ ?

---

ଆଶଙ୍କା କରି ଲେଖିଥିଲୁ ଭୁଲିଯିବେ ସେହି
କାହିଁ ମୁଁ ତ ଭୁଲି ନାହିଁ—ଭୁଲିହନ୍ତି କାହିଁ ?
ଭୁଲିବା ବଦଳେ ରେଖାପାତ ତୋର ମୋ ଅନ୍ତରେ
ପଶି ପଶି ଯାଏ ଗଭୀରରୁ ଗଭୀରତରେ
ଆଜ ତୁ ଥାଉ ! କାହିଁକି ଅବା ଦେବି ତୋତେ ଦୋଷ
ସେ ତ ମୋ କର୍ମ ଦୋଷ ।
ଯାହା ହେଉ, ତୋହର ପାଇଁ ଭୁଲିବି ନାହିଁ

ତୁ ଭୁଲିଲୁ ମୋତେ, ଏହି ବୃଶ୍ଚିକ ଦଂଶନ ଶତବାର ମୋତେ ସତେ
କରୁଛି ବଡ଼ ଅସହ୍ୟ—ଗଭୀରୁ ଗଭୀରେ
ଯାଉଛି ସେହି ସୂକ୍ଷ୍ମ ରେଖା ପଶି
ଅନ୍ତର ମୋର ଦହନ କରି ଶେଷ ଦେବ ମୋତେ ନାଶି ।

---

କୁଆ ଆସିଥିଲା, ଖବରଦେଇ ଗଲା,
କାହିଁ ସେତ ଆସିଲା ନାହିଁ !
କେତେଥର ଚାହିଁ ଚାହିଁ ରହେ ମୁହିଁ
ସେ ଆଉ ଆସେ ନାହିଁ
ଗେଣ୍ଡାଳିଆ ଚାଲିଯାଏ ଉପରେ ଖବର ଦେଇ ।
ଭାବେ ସେହି ତ—ଆଉ କିଏ ଅଛି ତହିଁ ?
ଫୁଲ ଫୁଟିଥିଲେ ବାଡ଼ କଣେ ଚାହେଁ ତାକୁ ଯେବେ ମୁହିଁ
ମନେ ପଡ଼େ ଏକାକୀ ସେ ପଡ଼ି ଅଛଇ
କାହିଁକି ? କାହିଁକି ଏହିପରି ? ଆସିବ ନାହିଁକି ଆଉ,
ଫୁଲଟି ବାଡ଼ କୋଣେ ଫୁଟି ଚାଲିଯିବ କାହିଁ ?
ଦେଇ ତ ଥିଲ ଦେଖା, ଆଉକି ଦେଖାହେବ ନାହିଁ ?
ହେଉ ତେବେ ବାଡ଼ କୋଣେ ଫୁଲ ବନେ ପଶିବି ମୁହିଁ
ସନ୍ଧାନ ତାର ପାଇବି ଅବା ତହିଁ ।

---

ମୁଁ ନୁହେଁ ଏବେ ଆଉ କଞ୍ଚା
ପିତା ଶୁଖୁଆ ଅବା ବାସି କାଞ୍ଜି ପାଣି
କିନ୍ତୁ ତାହା ହେଲେବି ମୂଲ୍ୟ ଅଛି ମୋହର
ପିତା ଶୁଖୁଆ ଆଉ ବାସି କାଞ୍ଜି ପାଣି

ଯାହାର କେଡ଼ା ତାହା ଘଟେ ମଧୁର ।
ଏଥିରେ ଦୁଃଖ କିବା ମୋହର ?
ସବୁ ଦିନ ଏକପଣ, ଏ ନୁହେ ସମାନ
ସଂସାରର ରହି ସଂସାରୀ ହୋଇ
ଅନୁଭବିବାକୁ ହେବ ଏ ସବୁ ପ୍ରକାର ।

—❋—

କେତେ ଦିନର ଛୁଟି କେତେ, ଉତ୍ସାହ କେତେ,
ହଠି ଆସିଲ କ୍ୟାପିଟାଲ କ୍ୟାବିନେ,
ଉଠାଇ ନେଇ ପଡ଼ିଥିବା କାଗଜ ଖଣ୍ଡିଏ,
ଫିଙ୍ଗି ଦେଲ ପୁଣି ତାକୁ, କାଖେଇଲ, ନାକ ଚୋଟ ଲଗାଲ ଭଉଣୀକୁ,
ନେଲ କିଛି ଦୂର— ଶଗଡ଼ ଗୋଟିଏ ଯିବାର ଦେଖି
ଓହ୍ଲାଇ ଦେଲ ଯାନଙ୍କ ସାଙ୍ଗେ ତାକୁ—ଶଗଡ଼ ଉପରେ ଓହ୍ଲାଇଲ,
ଗାଳି ଖାଇଲ, ଛାଡ଼ ଦେଲ, ପୁଣି ଖାଇଲ, ପୁଣି ଛାଡ଼ଦେଲ,
ଚାଲିଲ ପୁଣି ଘରି ଭଉଣୀ—
ଭାଇଟି ପିନ୍ଧିଛି ଜାମା, ଭଉଣୀଟା ଲଙ୍ଗଳା—
ସଂସାର ପଥେ ଚାଲିଲେ ଏକ ଲୀଳା ।

———

ଆହ୍ଲାଦ-ସ୍ୱପ୍ନ—
ବଂଶୀଧ୍ୱନି ଅନବରତ ଚାଲିଛି—କି ସୁନ୍ଦର—ଏତ ଘଣ୍ଟା
ହୋଇଗଲା—
ତା' ପରେ ସ୍ଥାନ ପରିବର୍ତ୍ତନ — ମାରପିଟ, ଗୋଳମାଳ—

ଭୀଷଣ ଘାଟି—ତା' ଭିତରେ ଜଣେ ନାଗର ଲୁଚିପାଟି—
ଚୁପ ରୁହ—ପୁଣି—ସାବାଡ଼ କର —
ନୂଆ ସଂସାର ଗଠନ କରିଲ —
ଏତେ ଥିଲେ, କେତେ ଗଲେ, ମଲେ ହଜିଲେ—
ତା ପରେ ନୂଆ ସଂସାର ।

ଃ—ଃ—ଃ

ସେ ତା ଜୀବନ ପଥେ ଚାଲିଲା,
ମୁଁ ଚାଲିଲି ମୋ ଜୀବନ ପଥେ
ଦୁଇ ଧାର ପୁଣି ମିଶିଲ ସଙ୍ଗରେ
କିନ୍ତୁ ତାହାର ପଥ, ମୋହର ପଥ ନୁହେଁ,
ସେ ଯେଉଁ ପଥ ମୋକ୍ଷ ଖୋଜେ, ମୋକ୍ଷ ପାଏ,
ମୁଁ ସେ ପଥ ଆଡ଼େ ଚାହିଁ ଅସ୍ୱସ୍ତି ହୁଏ ଏଥି ପାଇଁ
ଆଜି ତା ଜୀବନପଥ ମୋ ଜୀବନ ପଥ,
ମିଶି ହଜିଲାଣି ଅର୍ଦ୍ଧ ଶତାବ୍ଦୀ ପାର ହୋଇ
ଏହା ବଡ଼ ବଚସ ।

*ଃ—ଃ*

ଏତେ ମାୟା ମମତା, ଏତେ ଅଭିମାନ,
ସ୍ନେହ ସମ୍ମାନ,
ଏତେ ଆଗଭର ଦଉଡ଼ ଆସିବା—
ସେଦିନ କିନ୍ତୁ କହିଲ ଯେବେ, ରହିବ, ମୁହିଁ
କିନ୍ତୁ କହିଲୁ ନାହିଁ, ରହିଲୁ ଚୁପ ହୋଇ,
ସେହି ଦିନୁଁ ମୋ ମନ ହୋଇଯାଇଛି ଚୂନା,
ଅଜି ନାହିଁ ଭାବେଁ ସେତେ, କାହିଁ କି ହୁଏ ଏମନ୍ତେ

ପ୍ରୀତିର ଦୁଇ ଧନ ପାଇଁ
ତା ପରେ ଯାଏ ସେ ଜଗତର
ଯେପର୍ଶ ଦଷି ପାଞ୍ଚଂଶ
କଲ୍ପପାଏ ନାଆଁ, ଦେବାଇ ପ ଏ ପାଞ୍ଚଟି,
ଆଜ ନୂତନ ଘଷି ହେଉଛି ।
ପୁଣି କାଳିଆ ହୁଏ ନା ।
ନୂଏର ନୂଆ ଭାଠରେ ଲଗାଇ ନାଆଁ
ପଲ୍ଲବରେ ହୁଏ ପରଶ ନାଆ—
ମୁଁ ସେକ୍ଷ କଥା ଶୁଣୁଛି
ଅଙ୍ଗ ଥଳ ନୂଲ ନ ପାଉଛି
ଚଳି ସବୁ ଝୁଲି ଏବେ ନଳିଦ
କାହିଁ କି ଏପରି କହ ? ବୁଝି ନ ପାରେଁ
ମନ କସ ହୁଏ—ଫିକା ପଡ଼ିଗଲ ଦେହ
ଆଜ ଜଠନା ମନ ବେ ଧଠଗ ଧାଇବାକୁ
କି ଲଭ ଯାହାଁ ନ ମିଳେ ପରମ ପ୍ରୀତି ସ୍ନେହ ଏ ତନୁକୁ ?
ଯାଉଛି ଯାହା, ଯାଉ ତାହା, ତା ଆଶାରେ ଅଜ
ରହିବ କାହିଁ କି ?
ଜୀବନ ମୋର ସଫଳ କରିବ – ଅନ୍ୟନ୍ତ ସେହି ସଚ୍ଚିଦାନନ୍ଦ
ଘନ ରସକୁ ଲଭି ।

—— · ——

ମୁଁ'ବ ବାସନ ମାନେ, ଜମୋଡ଼ ସଙ୍ଗା କରେର
ମୁଁ ବି କର
ଏମନ୍ତ କହିଲେ ଚଳିବ ନାହିଁ ଭାଇ —

କବି ହେଲେ ଅନ୍ୟ ଦେଶଁମାନେ ପଢ଼ିବେ ତାକୁ
ସେ ଯେତେ ଯିବ ଭଲ
ତେବେ କହିବ କବି ସେ, ନୋହିଲେ ନାହିଁ ।
ପଦ ପଢ଼ୁ ଥିବ, ପଢ଼ି ଯାଉଥିବ,
ଅନ୍ତର ଭିଜିବ ନାହିଁ, ସେ କି କବି ?
ଢେ ଗୁନ୍ଥା କବି ଏକେତ ଅଛନ୍ତି ଏହିପରି
ଭାବଗୁନ୍ଥା କବି ହେଲେ ସିନା ତାକୁ କବି ବୋଲି ।

---

ଭୂମା ତୁହି, ସୀମା ଭିତରେ ଦେଖୁଛି ମୁହିଁ,
ମାସି ଛୁଇଁ ଦେଇ ତୋତେ ଭିତରେ ପଶେ ଯେତେବେ ମୁହିଁ,
ପାଏଁ କି ଆଉ ତୋତେ ଗୋଟିଏ ଠାଇଁ ?
ଭୂଟିଏ ଭରି ହାତ ଗୃହ ଅଟେ, ଟେ ଲାବଣ୍ୟ ଦିଏ ମୋତେ ଛୁଇଁ
ମୁଁ ହୋଇଯାଏ ତୁହି— ନୂତନ ମଣିଷ ତୁହି—ତହିଁ
ମୋହର ଦେଖା ନାହି
ଭଲ ଲାଗେ ଏହାଇ, ତେଣୁ ଧାଇଁ ଆସେ ପରବାସୁ ତୋତେ
ଛୁଇଁବା ପାଇଁ

---

ଛୁଏଁ ଛୁଏଁ ଛୁଏଁ, ଏଥି ତଥି ଯହିଁ,
ତୁମକୁ ଛୁଏଁ, ଆଉ ଛୁଏଁ କାହିଁ. ଯହିଁ ତୁମେ ନାହିଁ
ଭାବନା ମୋର ଯାଏ ଯହିଁ । ଛୁଏଁ ମୁଁ ତହିଁ, ତହିଁ
ସେହି ଛୁଆଁରେ, ତୁମେ ଧରା ପଡ଼, ମୁଁ ଧରା ପଡ଼େ ଥରେ, ଥରେ
ଆଉ ନାହିଁ କାହିଁ ।

---

କିଏ କହେ ଦୁଃଖ ?
ଅଜାର ଏତେ ଆନନ୍ଦ,
ନାଚ ନାଚୁଣୀ, ଏତେ ସ୍ନେହ,
ସେମାନେ ଏତେ ଆନନ୍ଦମନା
ଯେତେ କଷ୍ଟ ନେଉଥିଲ ବା,
ସବୁ ସହ୍ୟ ହୁଏ ସିନା
ଖାଲି ସେତିକି ନୁହେଁ,
ଜୀବନ ଦ୍ୱିଗୁଣ ବୃଦ୍ଧି ହୁଏ,
ଅନନ୍ତରେ ବଢ଼ିଯାଏ ଆୟୁ ପରମାୟୁ
ସୁସ୍ଥ ସବଳ ହୁଏ କାୟା
ହୁଏ ମୁଁ ମହାବାହୁ ।

---

ଘର ଚଟିଆ

ତୁମ୍ଭରେ ଚଞ୍ଚଳ ଚଟୁଳ ଚଢ଼େଇ
କେତେ ନାଚ କରୁ ତୁ ଆମ ଘରେ ଥାଇ ;
କେହୁ ଯେବେ ନାହିଁ ସଙ୍ଗୀ ମୋହର
ତୁହି ସିନା ଦେଉ ଆନନ୍ଦ ଅପାର !
ସ୍ଲେଟ ଶରୀରେ ଜୀବନ୍ତି ଭରା ଭରପୂର
ଝାଡ଼୍ କରୁ ଦେହେ, ଉଡ଼ ଯାଉ ଏଠି ସେଠି ନେତେ
ଅଙ୍ଗୀମ୍ଳାନ ମୁହିଁ ।
ତୋହର ସଙ୍ଗ ପାଇ
ଲଭେ ମୁ ଆନନ୍ଦ ଅପାର ।

---

ହୃଦେ ହୃଦେ ଏତେ ଅମୃତ
କେହି କହ ହୃଦ ଦେଲ ଫେରାଇ, ଦେଖ,
ଆଜ କି ନାହିଁ ?
ଜୀବନ ଧାଉଁଛି ଅମୃତ ସାଗରକୁ
କି ଆନନ୍ଦ ବହି ? କି ଉନ୍ମାଦନା ନେଇ ।
କିଛି ଦୁଃଖ ନାହିଁ
ଦାଉ ଯେ ଯିବାର, ଅବିଚ୍ଛିନ୍ନ ପ୍ରବାହ ବାରଂ ବାର ବହି
ଅତଏବ ଦୁଃଖ କିଛି ନାହିଁ ।
ସ୍ତିମିତ ବକ୍ଷର ସ୍ତିମିତ ସ୍ପନ୍ଦନ
ଆଜ ତରଙ୍ଗ ଆସୁଛି ବହି
ସ୍ଥଳ, ଜଳ, ଉଚ୍ଚ ପାଦେ, ଆନନ୍ଦ ଉନ୍ମାଦେ,
ସେ ବେଗେ ଧାଇଁ ।
ଅରୁଣ ଉଷା ଉଠିଲେ ନାଳି ହୋଇ
ପ୍ରାଣ କି ତହିଁ ଧାଏଁ ନାହିଁ ?
ହସଇ କି ନାଲି ଅରୁଣ
ଦେଖି ମୋତେ ? ମୁଁ କି ହସେ ନାହିଁ ?
କୋଳାକୋଳି ଆମେ ହେଉଁ ତହିଁ ?
ପ୍ରକୃତିର ଏତେ ସୁଖ—ଗାଢ଼ ହୁଅ ଅବା
ମାନବ ବକ୍ଷ—
ଯେବେ ଆସିବ ସେ ମାନବ ବକ୍ଷ ଆସୁ
ତାକୁ ଆନନ୍ଦେ ଦେନବ ଭାଇ
ଯେବେ ନ ଆସିବ ଖେଳିବ
ପ୍ରକୃତି ସହିତେ
ଅପାର ଆନନ୍ଦ ନାହିଁ କି ତହିଁ ?

ଜଗତ ସମସ୍ତ ପ୍ରକୃତ ସହିତେ
କେତେ ଆନନ୍ଦ
ଭଙ୍ଗୁରତା ଅଛି ତହିଁ
ମୁଁ ଜଗତ ପାଷାଣ ଭକାଟେ ହୋଇ
କାହିଁକ ରହିବ ଏକ ପାଶେ ?
ବାଉଳା ହୋଇ, କାହିଁକି ନେବ ଦୁଃଖେ ଜୀବନ ?
ସୁଖର ସଂସାର ପଡ଼ିଛି ରହି
ନୃରଆଡ଼, ନୃରଆଡ଼, ମୋ ନୃରେଆଡ଼—
ମୁଁ କେବେ ଏକାକୀ ନାହିଁ—
ଅସଂଖ୍ୟ ଅଗଣିତ ପ୍ରେମ ଚୁମ୍ବନ
ଅସଂଖ୍ୟ ମୌକ୍ତିକ ଅସଂଖ୍ୟ ସ୍ମୃତିବକ୍ଷ
ସ୍ପର୍ଶିତ
ଧାନ୍ୟହେଉଜନ୍ତୁ ତାର ମୁଗ୍ଧ ମୂକ ସେହି
ମୁଁ ବି ରହିବ ମୌକ୍ତିକ, ପର ମୁଗ୍ଧ ହୋଇ

ମୂକ ହୋଇ
ହବଉର ଏହି ପ୍ରାଣ ସ୍ୱବରେ ଯାଉ ବହି
ହବ ସ୍ୱବରେ ଯାଉ ତାର ବହି ।

କେଉଁ ଆଶା, କେଉଁ ନିରାଶ ଭାଷା
ତୋର ଅନ୍ତର ଦହୁଛି, ଜାଣୁଛି ମୁହିଁ,
କିନ୍ତୁ କି କରି ପାରିବି ମୁହିଁ ତୋହ ପାଇଁ
ସମାଜର ଦାସ ଦାସୀ ହୋଇ ରହିଥିବୁଁ ଯେତେଦିନ
ମୁକ୍ତି କାହିଁ ? ମୁକ୍ତି ନାହିଁ ? ସ୍ୱାତନ୍ତ୍ର୍ୟ ଛଡ଼ି ନାହିଁ ଜାଣ
ଭଗିନି ! ତୋତେ ବିଧାତା ଗଢ଼ିଛନ୍ତି କେତେ ଗୁଣ
ଦେଇ
ସେହିସବୁ ଗୁଣର ଆଦର କରୁଅଛି ମୁହିଁ—ମାତ୍ର
ସେ ଆଦର ପାଇବୁ କି ତୁହି
ଜୀବନ ଭରି ?
ଭଗିନି ! ତୁ ମୋର ଦେବୀ, ସୁନ୍ଦରୀ, କିନ୍ତୁ
ଖୁଛୁ ତୁ ନୋହୁକି ?
ଦୋଷ ନୁହେଁ କାଣେ ତୋହର, ଆମେ ସବୁ
ସମାଜର ଦାସ ଦାସୀ ଜାଣୁଛି ମୁହିଁ
ଜାଣୁଛୁ ତୁହି ।

———

ସେ ଶାଶୂ ଘର ବୋହୂ ନୁହେଁ
ସେ ବାପ ଘର ଝିଅ
ରହିଲା ସେ ଏହିପରି
ନିଜ ଘର ଆଜ ଜାଣିଲା ନାହିଁ
କୁହ
ସେ ଆସେ ଯାଏ
ଆମେ ସବୁ ତାକୁ ଦେଖୁ

ଧନର ପାଇଁ ବାଜାଦନ ସେ ବାପଘରର ଥାଏ
ସେ ବାପ ଘରଝିଅ
ଶାନ୍ଦର ବୋହୂ ନୁହେଁ ।

—*—

ଶୁଖି ଗଲଣି ଶରୀର, ତଥାପି ଅଛି କାମ ପିପାସା—
କାମ ନୁହେଁ, ପ୍ରେମ— ସ୍ନେହରେ ଆକର୍ଷିବା—
ଏହି ଶରୀର ଭିତରେ ପଶି ରହିଛି ସେହି ବାସନା,
କାମନା,
ମଧୁର କେତେ କଳ୍ପନା, ଭାବନା—
ପ୍ରକୃତିର ସ୍ୱର ଅଡ଼େ ଏହି ଯନ୍ତ୍ର ଲଗିଛି
ବିବାହ ବେଦୀ ବସୁଛି—କନ୍ୟା ଆସୁଛି ପୁଅଣୀ ହୋଇ
ଅପୂର୍ବ ଲାଗେ,—ମଧୁର ଲାଗେ—ପବିତ୍ର ଲାଗେ,
ଏ ଧରିତ୍ରୀ ଜଗତର ସର୍ଜନା ।
କାହାର ଭିଆଣ କିଛି ନ ଯାଏ ଜଣା
ଖାଲି ସ୍ୱର ଆଡ଼େ ଅନ୍ୟ, ଅନ୍ୟ — କାମନାର
ସମସ୍ତେ ବଣା
ଏହି କାମକୁ ହେମଦ୍ୱାର ଦେଇ,
ବିବାହ ବନ୍ଧନେ ରଖାଇ,
କେତେ କଥା ହେଉଛି ସର୍ଜନା—ଅର୍ଜନା,
ବାଜୁଛି ମଙ୍ଗଳ ମହୁରୀ, କେତେ ବାଣ ଫୁଟା
କେତେ ନାଚ ତାମସା, ହୋଉ ହୋଉ,
ଜଗଛଟା ଯାକ ବସନ୍ତ ସ୍ୱପ୍ନ ଚର ଦିନ ଧରି ।

ଭୁଟମଇ ତ ଅଚ୍ଛ ଆଜ କାଏ ଅଛୁ ମୋର
ଜଣା ନାଏ ନାହିଁ କେଉଁ ଦରେ ଯାଏ ମୁହିଁ
ତୁମେଇତ ଚଳାଉଚ ମୋତେ ଦିନରାତି ଭିତର ଦେଇ
ବୁଝିଛୁକି ତୁମକୁ ? ବୁଝିଛୁ, ମାତ୍ର ବୁଝିବାର ପାଇଁ
ରହିଥିବ ମୁହିଁ ତୁମର ସାଥେ ଚିର ଜାଗ୍ରତ ହୋଇ ।
ଅଜଣାତ ଅନେକ, ଜଣା ଅବା କେତେ ଟିକକ
ଯେହି ଜଣା ପାଉ ହୋଇ ଅଜଣାରେ ରହିବ ଚିର
ବିବେକ ।

---

ସେହି ପଥ ବାହି ଯାଇଛନ୍ତି ଅନେକ
ସେହି ପଥ ବାହି ଏବେ ବି ଯାଉଛନ୍ତି ଅନେକ
ପ୍ରେମର ପଥ ସେହି, କଣ୍ଟକେ ପୂରିତ
କେତେ ଯାତ୍ରୀ ଯାଉଛନ୍ତି ସେ ପଥ ବାହି
ଫଳ ଜଳ ଏବେ ବି ଦିଶୁଛିତ
ଏକାକୀ ନୁହେଁ ମୁ ତେବେ ସେ ପଥେ
ଦୈନ୍ୟ ଦୁର୍ଦ୍ଦିନ ଭିତରେ ସେହି ମହା ପୁଣ୍ୟ
ଅର୍ଜିଛୁ ଥରେ ଥରେ, ଅବା ବାର ବାର,
ଧରି ଅବା ଛୁଇଁ ହାତ ପାହାର ଯାହାର
ସବୁରିହେ କେତେ ଖେଳ ଯାଉଛନ୍ତି ବସି
ନଳିନୀ କାନ୍ତ ଯାଇଛୁ କେତେ ଦରଶି ପରଶି
ହରସ ବିଷାଦ—ସେତ ଗ୍ଲାନିଟିଳଙ୍କର ଅପୂର୍ବ ମେଳା
ଏହାଇତ ଜୀବନ ସାର, ଚୁହ ସର୍ବେ ହୋଇ
ପ୍ରେମରେ ଭୋଳା ।

---

ଛୁଇଁ ଥିଲ ଅବା ଦେଇଥିଲ ଦେଖା ଆଲୋକ
ରଶ୍ମି ପଥ ଦେଇ
ଛୁଇଁ ଥିଲ ଅବା ଦେଇ ଥିଲ ଦେଖା ପ୍ରଥମ
ଯୌବନେ ସ୍ନାତ ହୋଇ
ଛୁଇଁ ଥିଲ ଅବା ଆଖି ଆଖିରେ, ତବ ଲୀଳା
ଭଙ୍ଗୀରେ ଥିଲ ଦୂରେ ଦୂରେ ।
କାରଣ କ ଛୁଇଁ ନାହିଁ ତୁମକୁ
ଯେ କାରଣେ ଉଦ୍ଭାସିତ ହୋଇଥିଲା ମମ ଚକ୍ଷୁ
କହିବୁ ନାହିଁକି ବାଳାରେ
ଅନ୍ତରର ଆଶା, ଅନ୍ତରର ପିପାସା,
ମେଣ୍ଟିଥିଲା ଅଲପେ ଅଲପେ ସେହି ଦୂର ଦେଖା
ଚକ୍ଷୁ ଚକ୍ଷୁରେ ।
ଆଜ ସେହି ପରଶ ଯାହା ଛୁଇଁ ତବ
ଶରୀର, ଅସିଥିଲା ଲୀଳା ଉଦ୍ଧାମରେ
ପ୍ରତିଫଳିତ ହୋଇ ମୋହଠାରେ ।

---

ଚଇତାଳୀ ତୃଷ୍ଣା, ବୈଶାଖ କାହିଁ ।
ନାହିଁ, ନାହିଁ ମୁହିଁ, ଏଥି କାହିଁ
ଯାଇଛୁ ଶୋଇ ଅନନ୍ତ ପୁରେ ଯାଇ ।
ଜଏ କାହିଁ ନାହିଁ, ମନପୁରେ ମୁଁ ଏକାକୀ ଅଛୁ ଶୋଇ
ଧାତା କେହୁ, ବିଧାତା ସେହୁ ମୋର
ଆଦ୍ୟ ଜନମ କରତା ସେହୁ ।

ତାଙ୍କୁହିଁ ନମି ମୁହିଁ, ଚରଣ ତାଙ୍କର ଧରିବି ଶିର ଦୃଢ଼ ହୋଇ,
ସେହି ଏକା ସାର, ସବୁ ରସର ରସସାର,
ଆଉ ସବୁ ସିନା ଅସାର,
ସେହି ବୃନ୍ଦାବନେ ରହିବ ମୁହିଁ ଆପଣା ଭୋଳେ
ଭୋଳ ହୋଇ.
ଅବନୀ ଆକାଶ ସକଳ ପ୍ରକାଶ ମଧ୍ୟେ ସେ
ଛପି ଥାଇ,
ଅବା ତାଙ୍କ ଦରଶନ ପାଏ ସବୁଦିନ
ଏହିପରି ସକଳ ଭିତର ଦେଇ ।

---

ଘୃଣା କରିବାର ବେଳ ଥିଲା ମୋର କାହିଁ ?
ମୁଁ ତ ଲାଗିଥିଲି ଆପଣା କର୍ମେ ମୋର
ସବୁଦିନ କ୍ଷଣ କ୍ଷଣ ପାଇଁ
ଜୀବନଟା ମୋର କେତେ କି ଆଜି
ଘୃଣା କରିବାର ବେଳ କାହିଁ ? ଥାଉ,
ଯେତେଦିନ ରହିଛି ଏହି ମରତେ
ସକଳ ସାଥେ ସୁଖେ-ଦୁଃଖେ ଏ କଥା କହି
ଜୀବନ ଯାଉ ନିର୍ବେଦେ ସତତେ ।

---

ସେ ଭିତରେ ଅଛି, ଅତି ଭିତରେ, ତାର ମୋର ମର୍ମ ପୁରେ
ତାକୁ ପାଇବ ଅପର କାହୁଁ ?
ଯେ ଯହିଁ ମଜ୍ଜି ଥାଏ ସେ ତହିଁ ଥାଏ ସିନା ମିଟି,
ଅପରେ ପାଇବ କାହୁଁ ?

ବଚନ ଏ ବଧି ବଧାନ, ସେ ମୋ ମର୍ମ ପୁରେ
ମୁଁ ତା ମର୍ମ ପୁରେ ଜାଣ ।
ଆକାଶ ଅବନୀ ଯହିଁ ଯାହା ଦେଖେଁ ତାକୁ ଦେଖେ ଭିତରେ ଜାଣ

---

ସବୁ ଚଢ଼େଇର ସବୁ ମିଶ୍ରିତ କୂଜନ
ସବୁ ମାନବର ଏକତ୍ର ମିଳନ
ସବୁ ସଂସାରର ସକଳ ଜୀବ
ଏକସଙ୍ଗେ ମିଳିବ ମିଳିବ
ସେହି ଏକତ୍ର ଭିତରେ ମୋହର ସ୍ଥାନ କେଉଁଠି ?
ନ ଥାଉ ସେ ସ୍ଥାନ, ମାତ୍ର ମୁଁ ତହିଁ ଅଛି ଟି ।
ରଚିତ୍ର ଏ ସଂସାର
ତହିଁ ଭିତରେ ତୁମେ ମୁଁ
ଏକ ଏକ ପ୍ରକାର
ମାତ୍ର ମିଳନରେ ସବୁ ମିଳି ଯାଉଁ
ଏକ ହୋଇ ତୌର୍ଯ୍ୟତ୍ରିକରେ ଦେଖା ଦେଉଁ ।

---

ସ୍ନେହର ଗୋଟିଏ ଚୁମ୍ବନ, ପ୍ରୀତିର ଗୋଟିଏ ଆସ୍ୱାଦନ
ତହିଁ ଭିତରେ ହୁଏ ମହାଦାନ ପ୍ରତିଦାନ ।
ତାର ମୂଲ୍ୟ ବୁଝିବ କିଏ ?
ସେତିକ ବୁଝିବ ଅଜ୍ଞ କିଏ , ଦରଦୀ ଯିଏ ।
ଚୁମ୍ବନେ ଥିବା ମିଳନର ଛନ୍ଦ
ତେବେ ତାହା ଦେବ ଆନନ୍ଦ
ଚୁମ୍ବନେ ଥିବ ପରସ୍ପରର ଦାନ
ତେବେ ସେ ଚୁମ୍ବନ ହୋଇବ ସହସ୍ର ଗୁଣ ।

---

ଏହି ରାତ୍ରି ଭିତରେ ଯାମୀ ମୁହିଁ
କେହି କୁଆଡ଼େ ନାହିଁ —. ସବୁ ସୁପ୍ତ
ମାତ୍ର କୁକୁର ଭୁକୁଛି ଏହି—ସ୍ତବ୍ଧ ହେଉଛି ପୁଣି,
ମୁଁ ବସି ବସି ଜୀବନ ରହସ୍ୟ ସନ୍ତୁଚ କେତେକଥା ପୁଣି
ଶାସ୍ତ୍ର ପରଂପରାରୁ ଅଣୁଛି କେତେ ଚିନ୍ତା—
ତଥାପି ପାରୁ ନାହିଁ ।
ମୂର୍ଖ ମାନବ ମୁହିଁ—ଜ୍ଞାନ କାହିଁ—ଅନନ୍ତ ସମୁଦ୍ରରେ
ବୁଡ଼ି ଯାଉଛି ମୁହିଁ ।

—*॥*—

କେଉଁଟା ଆକର୍ଷଣୀୟ ନାରୀର କୁହ ?
ସ୍ତନ, ଜାନୁ, କଟି, କଟାକ୍ଷ,
ଜାନୁଗିର, ଅବା କଣ୍ଠ-ପୃଷ୍ଠ
ସବୁତ ଆକର୍ଷଣୀୟ ନାରୀର ନରଠାରେ
କିନ୍ତୁ ପରୁରେଁ ସେହି ନାରୀ ନରର ପୁଣି ହୁଏ,
କାହିଁକି ଏପରି ବିଚ୍ଛେଦ ?
ରହି ନପାରନ୍ତି ଏକ ସାଙ୍ଗରେ,
ମନ ଧାଇଁ ଯାଏ ଅନ୍ୟ ଆଡ଼େ ?
ତାହା ହେଲେ ମନହିଁ ପ୍ରଧାନ, ମନର ମୂଳ
ପ୍ରୀତିର ସନ୍ଧାନ
କାନ୍ଧ ଜାନୁ ଗିର ଗୁହା, ଅବା କପୋଳ ମୁଖ
ଚୁମ୍ବନ ।
ଏସବୁ ବାହାରର କଥା—ଅନ୍ତରେ ଆଣେ
( ଲବ୍ଧ ନମଗନ

—————

ଆଜି ହୋରି ଆଣିଛୁ ନାଲିପାଣି ଭରି
ହେଉ ମୋର ପିଚକାରୀ
ଲୁଚନ୍ତି କେଉଁ ଅଡ଼େ, ଆଜି ଗଡ଼େଇ ଛଡ଼େଇ
ମାରିବି ପିଚକାରି
ଖେଳିବି ହୋରି
ଆଜି ଯେତେ ନରନାରୀ ଆନନ୍ଦେ ଭରି
ଖେଳ ହୋରି, ସବୁ ଭୁଲି, ଖୋଲି ମାର ପିଚକାରି,
ଯାଉ ବସନ ଖସି, ଯାଉ ବସନ ଆସି, ହେଉ ମନ ଖୁସି
ଆଜି ହୋରି
ବସନ୍ତ ଉତ୍ସବ, ସବୁ ଭରି ଭରି, ଆଜି ହସ, ଆନନ୍ଦ
ମତ୍ତତା ଭରି,
ଆସିଛନ୍ତି ବସନ୍ତ ଦେଇ ପିଚକାରୀ, ଉଡ଼ ରହୁଛି ଛପି ଯିବ,
କୁଆଡ଼େ ବାହାରି ?
ନାହିଁ, ନାହିଁ, ଗଡ଼ା ଗଡ଼ା ଖାଲି—ପିଚକାରି ।
ନାଲି ପାଣି, ହୋରି, ହୋରି ।

---

ଆସିଥିଲୁ ମଳୟ ବାତେ, ଧୀରେ ଧୀରେ
ଆହା, ଆସିଥିଲୁ
ଧୀରେ ଧୀରେ ଛୁଇଁଥିଲୁ ତୋତେ
ଅଧର ପୁଟେ. ଆହା ! ଅଧର ପୁଟେ
ଆଜି କାହିଁ ଦୂରେ, ଦୂରେ ଯାଇଛୁ
ଦୂରେଇ ?

ଆସିବୁ ପୁଣି କେବେ ମୋ ଚଞ୍ଚୁ ପୁଟେ
ଅତୀତର ସୁଆଦ ପୁଣି ଚୁଙ୍ଖିବ କେତେ
କନୁ, କାହିଁ ? ଆଜ ନାହିଁ, ଆଜ ନାହିଁ,
ଯାଇଛୁ ସେ ଦୂରେଇ, ସ୍ୱପ୍ନ ସମ ଲାଗେ
ଦ'ଦିନର ସେହି ପରିଚୟ ସ୍ନେହ ସରାଗେ ।



ଆସିଲା ବସନ୍ତ, ଖୋଜିଲା ରତି,
ରତି ପତି ଏବେ ରତିରେ ମାତି,
ରତି ସହ ଏକାକୀ ପାଇଁ ଘର ଖୋଜନ୍ତି
କାହିଁକି ? ରତି ମଧ୍ୟ ସହସ୍ର ରତି
ବସା କରନ୍ତି—
ଏକ ଏକ ଡହାଁରୁ ରତି ବସନ୍ତ ବାହାରନ୍ତି
ସେହି ରତି ବସନ୍ତର କୁହୁକ ଖେଳା ପାଇଁ
ବସା ବାନ୍ଧନ୍ତି—
ବସା ଖୋଜନ୍ତି ପୁଣି ନିର୍ଜନ ସ୍ଥାନେ
ଯହିଁ ବଢ଼ିବେ କୃଷ୍ଣ ନନ୍ଦଘରେ ନିର୍ବିଘ୍ନେ
କନୁ କେତେ ବସାଯାଏ ଭାଙ୍ଗି କୋକିଳଙ୍କୁ ଭିତରେ
ଅସନ୍ତ ଯେଣୁ ସେ ଆଶ୍ରୟ ପାଇଲେ
ରତି, ରତି ପତି, ବସନ୍ତର ସମାଗମେ
ଉଦ୍ଭୂତ ପୀରତି—କନୁ ଲେଉଡ଼ୁ ସନ୍ତାନସନ୍ତତି
ବାରୁଣୀ କୁଣ୍ଡେ ବୁଡ଼ାଇ ରବିକୁ
ଏବେ ଚାଲ ସଖି ! ଧରି ନେବା ତାଙ୍କୁ
ବାସର ଗୃହକୁ ।

ରକ୍ତ ଜପ ତହିଁ ଜଳୁଥିବ ସ୍ମିତ,
ବୁଝାଇ ଦେଇ ଆସିବା ତୁରିତ
ଆଜ ମହା ସଂଗମ ବେଳା
ପ୍ରାପତ ହେବ ତହିଁ ମହାପୁଣ୍ୟ
ସୁଖ ମେଳା ମେଳା
ଯୌବନ ଆସିଛି ଅଙ୍ଗେ ଅଙ୍ଗେ ପ୍ରତି ଅଙ୍ଗେ
କାମନା କରେ ସଙ୍ଗ ଦିଅ ସଙ୍ଗ ଦିଅ ପ୍ରତି ଅଙ୍ଗ
ଯାଅ ସଖି ତହିଁ, ଅନ୍ଧାର-ଗହ୍ୱର,
ଆନନ୍ଦର ଲହରୀ ଖେଳୁଛି ତହିଁ ।
ବଧୂନନ—ରତି କ୍ରୀଡ଼ା ସେହି ।

---

କାଲି ରାତିରେ, ଖୋଜିଲି ତାହାରେ,
ନିଦ ଭାଙ୍ଗି ଗଲା ଯେବେରେ,
ଶୋଇ ପଡ଼ିଥିଲି ଥକା ହୋଇ,
ଚେତ-ଚେତନା ଥିଲା ନାହିଁ
ସେ କି ଶୋଇଗଲା ଥକି ଥକି
ଦିନ ଯାକ ରାତି ଅଧଯାକ କାମ
କରି କରି
ଶୋଇଥିଲୁ ପାଖରେ, ଖୋଜିଲି ତାକୁ
ନିଦ ବାଉଳାରେ, ପାଇଲି ନାହିଁ ।
ମର୍ମ ହୋଇଗଲା ମୋର କଣ,
ଖାଲି ବିଛଣା ଇଏ କଣ ?
କୁଆଡ଼େ ଶୋଇଛି ସେହୁ ?

ଦେଖିଲି ପୁଣି ଶୋଇଛୁ ସେ ପ୍ରାଣରେ
ଏହିପରି ତ ଜୀବନ ଯାଉଛି,
ସପ୍ତତି ପାରି ହେଲି ଯେ
ଆଜି ସେ ଗଲେ ଚାଲି, ଏକାକୀ ହୋଇ,
ବୁଲିବି ମୁହିଁ, ସଂସାର ଦ୍ୱାରେ,
ଆଜି ମୁଁ ଗଲେ, ସେ ଏକାକିନୀ ହୋଇ,
ରହିବ—ଏହି ଭାବନା ମୋତେ ଘାରେ ।

---

ଏହିପରି ଦେଶ ଦେଶ,
କେତେ ପ୍ରକୃତି ପୁରୁଷ, ସହିଛେ ଘୋର ଚିନ୍ତା
ସେହି ମାନେ ଆସନ୍ତି ପୁଣି ମନ୍ଦି ମନ୍ଦିରେ
କେତେ ଦୟା ବହି, କେତେ ସ୍ନେହ ଆଳି ଅର୍ଘ୍ୟ ନେଇ
ଏତେ କରୁଣାମୟ ସେ — ଲୁଚି ରହି ସବୁ ବେଳେ ଯେ,
ରହିଛି, ସକଳ ସାଥେ, ମୋ ସାଥେ,
ଆଜି ଯିଏ ଯହିଁ ଆସେ, ମନ ଭିତରେ ପଶେ,
ସେ ରହି ଯାଏ, ରହି ଯାଏ କିଛି ଷଣେ, ମର୍ମ ଜାଣେ,
ସେହିମର୍ମ, ସେହି ନର୍ମ, ସେହି ସୁନ୍ଦର ରମ୍ୟ ଖାନନ
ଏକାମ୍ର କାନନ
ଏହି କାନନେ ରହିଛି ମୁହିଁ, ରହି ରହି, ଥକି ଗଲିଣିକି ?
ନାହିଁ, ନାହିଁ,
ନିତି ଆସେ କଣଳୟ, ନବ ବସନ୍ତ, ପରଶ ଲାଗେ ପ୍ରୀତିଜନର ।
ମରଣ କାହିଁ ? ମରଣ କାହିଁ ? ଦୁଃଖ ଶୋକ ଅଛି
ଆନନ୍ଦ ଅଛି ଜାଣ ।

ନାସ୍ତି ମୁହିଁ ମୁଖରେ କହି ନ ପାରଇଁ,
ସେ ଯେ ଆସିଲେ ଏତେ ଥର,
ଅପେକ୍ଷା କରି ବାର ବାର ।
କହି ପାରିଲି ନାହିଁ,
କହିଛି କାହିଁକି?
ଏଥର ସେ ଯେବେ ଯିବେ ଦୂର, ବହୁ ଦୂର,
ଯାଆନ୍ତୁ, ମୁଁ ରହିବି ମୋ ଅନ୍ତଃପୁର,
ଆକାଶ ଅବନୀ ଖୋଜିବି ମୁହିଁ, ମୋହର ଭିତର
ଖୋଜୁଥିଲି ଯାହା, ସେ ଯେବେ ହୋଇଛି
ଦୂର ଅତି ଦୂର
ମୁଁ ରହିବି ମୋ ଅନ୍ତଃପୁର, ସବୁ ଭାବନାରେ
ହୋଇ ଭର ପୂର,
ସେତ ନୁହେଁ ଦୂର—ସେ ଯେ ମୋ ଅନ୍ତଃପୁର
ତହିଁ ରହି ଆକାଶ ଅବନୀ ମୁହିଁ ଦେଖିବି ଯାହାରେ
ତାହାରି ଭିତରେ ରହିବି ପୂରି
ସେହି ଭାବନା
ଯାହା ଭରିଛି ମୋତେ ।

———

ଧନ୍ୟ ଭରତ, ତ୍ୟାଗପୂତ, ରାଜର୍ଷି ସମ ତୁମେ
କଟାଇଲ ଜୀବନ, ରାଜର୍ଷିଠାରୁ ବଳି
କାରଣ ତୁମେ ରାଜା ହୋଇ ହେଲ ଅଧିକେ ଋଷି
ପିତୃ ସତ୍ୟ ପାଳିବାର ପାଇଁ ରାମଚନ୍ଦ୍ର, ଲକ୍ଷ୍ମଣ,
ସୀତା, ସହିତ

ଗଲେ ବନବାସ—ଆଜ ତୁମେ ପାଦୁକା
ଆପି ତାଙ୍କର
କଲ ରାଜ୍ୟପାଳନ ମହା ମହର୍ଷି ତୁମେ ନୁହଁ
ଆଜ କଏ ?
ଧନ୍ୟ ଧନ୍ୟ ଭରତ ରାଜସୁତ ତୁମେ, ।



ଧୂଆଁ ଧାର ବେଣୀ ଏଣୀନୟନୀ ଝୁଲାଇ ଚାଲନ୍ତି ପିଠିରେ
ତୃମଗ୍ନ ଗାଇଲେ ସେ ଅବା ମନେ ଆସୁଛି ଯେ
କି ଅବା ଧେନୁ ଦଳ ଚାଲନ୍ତି ଗୋଠକୁ ନଚନ୍ତେ
ସଙ୍ଗିନୀ ମେଳେ ।
ଚହିଁ ରହିଥାନ୍ତି ଯୁବାଏ ଅବା ମୂର୍ଚ୍ଛିତ
ତାଙ୍କ କଟାକ୍ଷ ବାଣେ,
ରଙ୍ଗିଣୀ ଶାଢ଼ୀ ପିନ୍ଧି ଚାଲୁଛନ୍ତି ରମଣୀ ଯେମାନେ
ଯୁବାଏ ଧରନ୍ତି ତାଙ୍କ ବେଣୀ ଅକ୍ଷି ପଂକ୍ତିରେ
ମୃଣାଳ ବାହୁ ଉନ୍ମୁକ୍ତ ରହେ ତାକଇ ଭ୍ରମରେ
ଆହା ଏକ ଅଦ୍ଭୁତ ମୀନ ମୀନାକ୍ଷୀ ଧରିଲେ ନଗରେ ।



ହାତରେ ଛୁଅଁ ନାହିଁ, ମନରେ ଧର ନାହିଁ,
ଦେଖ ଦୂର ଦୂର
ଦୂର ହେଲେ ସେ ଦେଖା—ଦୂର ହେଉ, ଦୂର ହେଉ
ସେ କି ଦେଖା ? ଯହିଁ ମନ ଛୁଇଁବ ନାହିଁ,
ଦେହ ଧରିବ ନାହିଁ ।

ରହିଥା—ଛେବେ ତୁହି—ତୋ ଘରେ ଥା—ଟୋଟେ
ଦେଖିବ କାହିଁ ? ଦେଖିବ ନାହିଁ ।

———

ଆକର ଏ ବାସରେ
ଆଜି ମଧୁ ମାସରେ
ସଂଗିଳ ଜୀବନର ପରିଚୟ,
ସବୁ ନାହିଁ ଶେଷଥର ପାଇଁ କି
ସବୁଗଲା ନିମିଷକ ମାତର ।
ବସନ୍ତ ଲଗନେ
ଆଜି ସତେ ସପନେ
ଆଜି କେତେ ନୂଆ ଶିଶୁ ଜନ୍ମ ବି ହୋଇଲେ
କେତେ ଗଛ ଫୁଲଫଳେ ହସିଲେ—
ବସନ୍ତ ଲଗନେ
କେତେ ଲୋକ ଦେଖାହେଲେ
କେତେ ଲୋକଙ୍କ ଚିହ୍ନା ହେଲେ
ଯାହାକୁ କି ଜୀବନେ
ଜାଣିବାର କଳ୍ପନା ନଥିଲା ।
କିନ୍ତୁ ଆଜି କପରି
ପହଞ୍ଚିଲ ଜୀବନରେ ମଧୁବେଳ ସପନେ
ପୂଜ୍ୟ ହେ ଅତିଥି
ନୂଆ କେତେ
ଜୀବନର ପରିଚୟ ପାଇଲି
କନ୍ଦୁ ହେ ଅତିଥି

ତୁମେ କାଲୁ ନୂଆ ନୂଆଁ ଜୀବନେ
ଦେଖିଛୁ ମୁଁ ସାକ୍ଷାତେ ବହୁବାର
ଜୀବନେ ଓ ସପନେ.
ଆଜ ପୁଣି ସରିଯିବ
ଆଜ ପୁଣି ଲଙ୍ଘିଯିବ
ଦୂରେ ଯିବ ଉଭେଇ
ତୁମେ ଯିବ ଦୂରେଇ
ଏତିକି
ଏହାପରି କେତେ କଥା, ନୂଆ ଆଉ ପୁରୁଣା,
ଶୁଣାଇଦେବ ଦେଇଯାଅ ଏତିକ ମୋ ମିନତି ।

—ପ୍ରହ୍ଲାଦ ବା ପ୍ରଫୁଲ୍ଲ ।

———

ଏ ଯୌବନର ମଧୁ ଗୁମ୍ଫି ଉଭେଇ ଗଲ
ତୁମେ କୁଆଡ଼େ
ସେହି ଯୌବନର ସେହି ପ୍ରେମ
ରଖିଗଲ ମୋ' ଅନ୍ତରେ ଚିର କଳଙ୍କର ଦାଗ
ତୁମେ ଗଲ ଉଡ଼ି, ଆଉ ମୁଁ ?—
ମୋ ଜୀବନ ଗଲା ସରି, ଏ କଥା କି
ଭାବିଲ ନାହିଁ ?

———

ଦୁଃଖିନୀ ତୁ ଦୁଃଖରେ ଭରିଲୁ, ଭସାଇଲୁ ମୋତେ,
ତୋହର କପାଳେ କି ନାହିଁ ସୁଖର ସମୃଦ୍ଧି

ଅଜାଡ଼ି ଦେଉଛନ୍ତି ଖାଲି ଦୁଃଖର ଛାତି ଦିନରାତି
ଶ୍ରାବଣରେ ଧାରା କି ଖାଲି କନ୍ଦାଇବା ପାଇଁ—ସୁଲଭ କି ନାହିଁ

—୦—

ଚିନ୍ତା କରୁ କରୁ ଆଜ ଦେଖିଲି ଚରଣ
ମିଳିଲ ଅନ୍ତର୍ଯ୍ୟାମୀଙ୍କ ଅଶେଷ କଲ୍ୟାଣ ।
ବାଞ୍ଛା କଲୁ ବାଞ୍ଛାଗୁରୁ ବାଞ୍ଛା ଜ୍ଞାନ ଦାତା
ଦାଆନ୍ତୁ ଅଶେଷ ତୁଷ୍ଟ ହେବ ମନୋବ୍ୟଥା ।
ଥରେ ଥରେ ଦେଖାଦେଇ ଦୂରାନ୍ତୁ କଷଣ ।
ଜୀବନ ସାର୍ଥକ ହେଉ ଲକ୍ଷ୍ମୀ ନାରାୟଣ ॥

—୪୪୪୪—

କଏ ହେବ ଏହି ନାମ, ତୀର୍ଥଙ୍କର
ଭଗବାନ
ତୀର୍ଥଙ୍କର ସନ୍ତ କହୁଛନ୍ତି ଭଗବାନ
ସେବୁଛନ୍ତି ସେ ସକଳେ ତର ନିଜକୁ ନ୍ୟୁନ
ଆଜ କହିଛନ୍ତି ଶାସ୍ତ୍ର ବଡ଼ ହେବୁ ତ ସାନ ହୁଅ ।
ତେଣୁ ଭଗବାନ ଧଇଲେ ସୁବଳ ଚରଣ
ପୂଜା ପାଠ କାହିଁ ପାର, ରସେ ସେବାରେ ଯେ ମଗ୍ନ
ସେବା କରେ ସକଳ ଚରଣ ।

———

### କ୍ଷୁଦ୍ର କଣିକା

ଦୁନିଆରେ ମୁଁ କ୍ଷୁଦ୍ର କଣିକା
ଖୋଲା ନାହିଁ ମୋର ସକଳ ବନ୍ଧନ
ମରଣେ ଜଣାଏଁ ସ୍ୱାଗତିକା
ଛିନ୍ନ କର ମୋ ମମତା ଗ୍ରନ୍ଥି
ଫିଙ୍ଗ ଦୂରେ ପାଥିବ ବାଞ୍ଛନା
ତୁଟାଅ ମୋର ସଂସାର ପ୍ରୀତି
ମିଶାଇ ଦିଅ ଜୀବନ ତୃଷ୍ଣ
ନାହିଁ ଇଚ୍ଛା ଯାଉ ବସ୍ତୁ ବନ୍ଧ
ବିଲୀନ ବାଜୁ ଆନନ୍ଦ ଭେସ୍ତ
ଖୋଲିଦିଅ ମୋ ରୁଦ୍ଧ ଟିକୁଲି
ମୈତ କର ଗୋ ମାବତ କନ୍ତୁଷ
ଅନ୍ତର ହେଉ ସ୍ୱଚ୍ଛ ନିର୍ମଳ
ଆନନ୍ଦରେ ଗାଇବ ବନ୍ଦନ ଗୀତିକା
ଆଲୋକ ସ୍ପର୍ଶ ଦେଇ ଦେଉ ଗୋ
ଅଭିନବ ସୃଷ୍ଟି ଯବନିକା
ଖୋଲା ନାହିଁ ମୋର ସକଳ ବନ୍ଧନ
ମରଣେ ଜଣାଏଁ ସ୍ୱାଗତିକା ।

ଶୈଳବନ୍ଧୁ

---

ଶ୍ରୀମାନ୍ ଶ୍ରୀଧର କପିଳ ମୋର
ଢେଙ୍କାନାଳର ବାଟକରେ କଲ ପବିତ୍ର ତୀର୍ଥ କପିଳାସ,
ସେହ୍ନ ବନୁ ସେହ୍ନପାଟରେ ଉଠିଥିଲ ଦେଉଁ ସ୍ୱନ
ତାହାର ଅତି ଅଦ୍ଭୁତ, ଅତି ମହାନ,

କାହିଁ, କାହିଁ ଭଗବାନ ? ନାହିଁ, ନାହିଁ, ଦେଲ ଅଧ୍ୟାନ
କଲସବୁ ସର୍ଜନ । ଏହି ଅଣୁ ପରମାଣୁ ଦେଶ
କି ଦୃଷ୍ଟି ତୁମର ଅଦ୍ଭୁତ
ମହାନ— ନମୋ କହିଲି ଭଗବାନ ।

---

ମାଆଳେ ମାଆ, ତୁ କେଉଁ ମା ?
ଗୋଉଆ ମା'
ଫଚାର କାନନେ, ନା, ନା, ଭୁବନ ମନ୍ଦରେ
ଦେଖିଲି ତୋତେ ଏତେ ପ୍ରକାରେ
ଜୀବନଟା ମୋର ଶୁଷ୍କ ଥିଲା, ବରଷା ଅସିଲା,
ବନ୍ଦିଲି କେତେ,
ତୋ'ପାଇଁ ଏହି ବରଷା, ମୋ ମନ କଲା ସରସା
ଜୀବନର ଏହି ପ୍ରୀତିର ଘଣ୍ଟସ୍ୱେ,
ହେଉ ଅମୃତର ସୋପାନ—ତୋହର ।
ମୁଁ ଯେ ଯିବାର ଯାତ୍ରୀ ବହୁଦୂର ଯାଇଛୁ ଭୁଲି,
ତୁ ନୂଆ—ନୂଆର ପରଶେ ହାଡ଼ ମୋର
କଅଁଳିଲ ସତେ କହୁଛୁ ଆଜ ।

---

ଚିନ୍ମୟୀ ତୁ, ମୃଣ୍ମୟୀ ତୁ,
ଚିନ୍ମୟୀ ମୃଣ୍ମୟୀ ଏକଧାରେ ଜଡ଼ିତ ତୁ,
ମୁଁ ବି ହେବି ଚିନ୍ମୟ, ମୃଣ୍ମୟ
କି ଅଲୌକିକ ! ତହିଁ ଭାବନା ମୋର

ଚନ୍ମୟୀ, ମୃଣ୍ମୟୀ,
ମିଳେ ଯେବେ ଚନ୍ମୟ ମୃଣ୍ମୟରେ

———

ଦେଖାହେଲ କାଂପା
ଘରର ଦେଉଳେ କହୁଛ ମୁହିଁ
ଦେଖା ହେଲ ଖାଲି
ମୋ ଦୁଃଖ କାହାଣୀ ଶୁଣିବା ପାଇଁ ।
ଶୁଣି ଶୁଣି ତମ ବସ୍ମିତ ହୁଅ
ମୁଁ ତ କେବେ ହୁଏନାହିଁ ଅସ୍ଥିର ।
ଦୁଃଖ ଦଅଇ ଅନେକ ସନ୍ଧାନ
ଦୁଃଖତ ଅତି ପ୍ରିୟ ମୋହର
ମୁଁ ଗୃହେଁ ବାନ୍ଧିବ ଦୁଃଖର ଡଙ୍ଗା
ମୋ ଭବିଷ୍ୟତର ବକ୍ଷେ
ମୁଁ ଖାଲି ଗାଉଛି ଆଗମନୀ ତାର
ମୋର ଏ ଭଙ୍ଗା କକ୍ଷେ ।
ମୋର ଏ ଦୁଃଖ ଦେଇଛି
ମୋ ହାତେ ଲେଖନୀ,
ଆଉ କ ଶୁଣିବ
କହିଲତ ମୋର ଜୀବନୀ

× × × ×

ତମେ ଗୃହଁ ଦେଖିବାକୁ
ମୋର ସୁଖ ସ୍ୱତ

ସୁଖ ବେଳେ ପାଇବନି
ତମେ ମୋତେ କେବେ ।
ସୁଖର ବସନ୍ତ ବେଶରେ
ଦେଖାଦେଲେ ଆସି
ଖୋଜି ବୁଲେ ମୁଁ ଅଶ୍ରୁପୂ
ରେବ ମୋହନ ହାସି ।
ତେଣୁ ସୁଖ ଦିନର ନମସ୍କାର
ତୁମ ଲାଗି ବନ୍ଦ ଅଛି ମୋର ଦ୍ୱାର ।
ତମେ ଜନ୍ମ ମନା
ଭାବିବାକୁ ଅନ୍ତରର ମୂର୍ତ୍ତି
ସେ ମୂର୍ତ୍ତି ଦଏ ମତେ ସୁଖ
ସେ ମୋ ମନେ ଦେଉଥାଏ ପ୍ରୀତି ।
ତମେ କହ ଲୁଚାଇବା
ଢାଙ୍କି ତାର ଛାୟା
କହୁ—ନା, ନା, ପାରିବନି ଛାଡ଼ି
ସେ ଯେ ମୋର କାୟା ।
ସ୍ମୃତି ମୋର ଯିବ ଯେବେ ଲିଭି
ତମେ କି ଭାବୁଛ ମୁଁ ଅଜ୍ଞ
ସେଥିରୁ ବଳ ଥିବ ?
ମୋ ସ୍ମୃତିକୁ ଦେବନି ନିସ୍ତାର
ମୋ ସ୍ମୃତି ଧାରାର ଗାଇବି ମୁଁ ଜୟ ଗାନ
କରୁଣା ଯେ ତାଙ୍କର ଅପାର ।

---

ତା’ ଯାଇଁ ତ ତରୁଣ କାଢେ ଗାଁଉହାସ୍ୟ ଦନସାସ
ସେ ଯଦ ଯାଇଛି ମଧୁଲୁଟି—ଆଜ ନଦ
ସେ ଆସିଲ ନାହିଁ ।
ଗଲ ଯଦ ସେ ମଧୁଲୁଟି ଅନ୍ୟନ
ତୁମେ କାହିଁକ ତାହା ଆଶାରେ ଝୁରିଚର ?
ସେତ ଲୁଟିଲ ମଧୁ ଏ ଫୁଲ ସେ ଫୁଲରୁ
ତମେ କାହିଁକ ଏତେ ବ୍ୟଥା ପାଅ—
ମଧୁ ଲୁଟି ଯାଇଛି ଗୃଲସେ—
ଆଉ ତୁମେ ହେବ ନାହିଁ ଧରା ଶରସମା !
ବୃଥା ଏ ଭ୍ରମ—ମଧୁ ଲୁଟି ଗଲ ସେ,
ମଧୁ ଲୁଟି ଥିଲ ତୁମେ
ଏବେ ତା’ ସାଥୀ ତା ନହେଲ ନାହିଁ
ଧୀର ସ୍ଥିର ହୋଇ ଅଜ ଏକ ସାଥୀ ଖୋଜ ତୁହ ।

—*—

ଗୃହ ଅଢେ଼ ଲଗିଛି ବଧୂଜନ
ମୋତେ କରୁଛ କାହିଁକ ଆନ
ଏହି ଭାବନା ହବଇ ହଣୀ
ଯାହା ସଙ୍ଗେ କରିଛି ସେ ଥରେ ଦୃଷ୍ଟି
ବିବାହ ବୟସେ ବିବାହ ନାହିଁ
ରତ କରିବ ସେ କପର ନିର୍ଭୟ ହୋଇ
ଏଣୁ ଗୃହିଁଇ ସେ ସେହି ରତ ଗତକୁ
ମାସ ସେ ଯେ ବିମନା, ଭରବ ଏ କସ

ଘଚୁଛି ଖାଲି ଝୁଲିବ ଅବା ଗୃହିଁ
ଚାପି କାଠକୁ ।
ଏହିକି ଥିଲା ତାର ଭାଗ୍ୟ—
କାହିଁକି ମୁଁ ଭାବେଁ
ନହେଲା ନାହିଁ—ଆଉ ରମଣୀ କି ନାହିଁ ?
ମନକୁ କାହିଁକି ଦାସୀ ପରି ଦେଉଛୁ
ଦେଉଛୁ ବଳେଇ—
ଅଣାୟତ୍ତ ହୋଇ ଲଭିବୁ କ୍ଳେଶ
ଜୀବନଟା ଯାକ ଯାଉ ହେଲା ତାହାରି ପାଇଁ
ସେ ନେଇଛି ତୋର ମଧୁଲୁଟି—ହାୟ ହାୟ କରି
ଏଣିକି ଜୀବନ ବିତାଇବୁ କିନା
ମାତ୍ର ମୁଁ କହେଁ କାହିଁ ପାଇଁ—
ଯେ ଯାଇଛି, ସେ ଯାଉ,
ଜଗତରେ କି ନାହିଁ କେହି ଆଉ
ମନର ମିଳନଟି ଜଣକଟାରେ ?
ଆଉ ସବୁ କି ବିଷଧର ସର୍ପ ସନ୍ତରେ
ମାଗ ହେଲନ୍ତି ତୋର ମିତ ହେବି ପ୍ରକାରେ ।

—*୧୪*—

ନଷ୍ଟ ହୋଇଗଲା ଜୀବନ ଯୌବନ
କୀଟଦଷ୍ଟ ପୁଷ୍ପ ସମ—ନହେବ ତାହିଁରେ
ଦେବତା ଅର୍ଚ୍ଚନ
ନଷ୍ଟ ହେଲା କିଏସେ ?

ଦୁଇ ଥିଲ ତୁମେ ମୋ
ଏକ ଗଲ ଚାଲି ଅନ୍ୟତ୍ର
ତୁମେ ରହିଲ ଏକାକିନୀ ମୌନ ନାହିଁ କି
ଏବେ କଳସ୍ୱର
ପାଷାଣ ପ୍ରାଚୀର ଉପରେ ହୋଇଣ ଛିଡ଼ା
ଏବେ ଖାଲି ସାଗରର ଊର୍ମିଗଣା
ମୁଣ୍ଡ ଝୁଲି ଯାଉଛି ନାହିଁ — ଅଚଳ ଗର୍ବ
ଝାସ ଦେବକି ସେହି ?
କିନ୍ତୁ କାହିଁ ପାଇଁ ?
ଯେ ଯାଇଛି ଯାଉ —
ଜୀବନଟା ଏତେ ଶସ୍ତା ନୁହେଁ
କହୁଛି ମୁହିଁ
ଯେ ଯାଇଛି ଯାଉ — ନୂଆ ଜୀବନେ ମନ ରହୁ ।

---

ସନ୍ନ୍ୟାସୀ ତୁମେ ଅପଣା ପ୍ରେମ ଅପେ ଥାଇ
ରହି ଥିଲ ମୌନ ହୋଇ—ଦେଖି ଥିଲ ତୁମକୁ
ଶ୍ରୀ ନଗରେ
ବାଣୀଟି ହାତରେ ତୁମର
ମନ ମଉଜେ ବଜାଅ ତୁମେ ଦେଖି ଥିଲି ମୁହିଁ
ସେହି କଥା ମନେ ଅଛଇ
କାରେ ପାଇ ଅଛକି ନାହିଁ ଜାଣେ ନାହିଁ,
ମାତ୍ର ମୁଁ ଦେଖୁଛି ତୁମକୁ, ଆଉ ତୁମ
ନଗ୍ନ ମୂର୍ତ୍ତିକୁ, ସଭ୍ରମେ ବସିଥାଇ

ମୌନ ହୋଇ ବାଣୀ ବଜାଉ ଥାଅ
ଆପଣା ମନେ
ଧନ୍ୟ ଧନ୍ୟ କହିବି ତୁମକୁ

---

ନାସ୍ତି ନଦୀ ବାରି ନୋହିଲେ ତହିଁ ପଡ଼ଏ ଯାଏ
ହାସ କୁମୁଦ, ନେତ୍ର ମୀନ ମୁଖ କମଳ ପ୍ରାୟେ ।
ଶତ ଶତ ଜଳ ରଧନ୍ଟୁ ଟୃକୁ କୁହିଳ ବାଳେ
ତୁଷାର ବୃଷ୍ଟି କ ହୋଇଛୁ ନବ ତମାଳ ଦଳେ ।
ନୀଳ ଗଗନ କିବା ଭରିଛୁ ତାର ତାରକା ଶ୍ରେଣୀ
ମୋତି ସ୍ତଗନ କ ହୋଇଛୁ ଜଳମଣି—ଧରଣୀ

—❀—

ବିଷାଦ୍ୟା ଯାମିନୀରେ ମୋ ପ୍ରାଣ ସହ
ଦିନେ ପଲଙ୍କେ ଥିଲ ମୋ କୋଳେ ଶୋଇ
କୁସୁମ ବକ୍ଷ ହୋଇ ଅବଶ ଟୋହ—
ନିକ ଛେଜି ଛଟେଲ ହୋଇଛି ଜହ—

---

ମନ ମୋର ଲୁହେଁ ଆଠଘଡ଼ି ମନ୍ଦ
କଟେଶ ମୁଁ ଚଢ଼ କାମ
ବାପା ମୋ କହନ୍ତି ହିଅ କନ୍ଦୁ ଢୋର
କ ହେବ ତାହାର ନାମ
ଘାଠ ଶାଠ ଚଢ଼ି କେଇ ଗଣ୍ଡା ହିଅ
କରିଗଲେ ଅଢ଼ାକାମ

ତୁ ପାଠ ପଢ଼ି କି ନୂଆ ବାସନା
ଜାଗିବାକୁ ମନ
ବୋଉ ମୋ କହନ୍ତି କି କାଲି ପାଠେ
ଶ୍ରୀ ତୁଳି ମୂର୍ତ୍ତି ବସି
ବଂ ଅକ୍ଷର ପଢ଼ି ଭାଗବତ ଗାଇଲେ
ସେହୁ ହେଲେ ଆମ ଋଷି
ଜନ ନାହିଁ ଏତେବଡ଼ା ଲୋକଏ
ଶୂନ୍ୟ ଗାଡ଼ି ମାନ ଚଢ଼ି
ପୁସ୍ତକଙ୍କ ସଙ୍ଗେ ଥେଠର ଦେଖନ୍ତି
ଏହି କାଆଁ ପାଠ ପଢ଼ି
ଏ କଥା ଶୁଣି ସୁଲ ମେଳ ଗଢ଼ିଲ ଜାଲି
ଦୁମ୍ ଦୁମ୍ କରି ବଜାଇଲେ ଘର
ଧମକ ଦେଲେ ସେ ଚଢ଼ି
ପାଠ ପଢ଼ା ଯେବେ ବନ୍ଦ ହେବ ତାର
ଅନେକ କମାର ହେବ
ବାପା ବୋଉଙ୍କ ସ୍ନେହ ହେଲ ବେଶି
ଭଲ ମୋର ଗଲେ ହାରି
ବଡ଼ ହେବା ପାଇଁ ବାସନା ମୋର
କେଉଁ ଆଡ଼େ ଗଲା ଉଡ଼ି ।

———

ଖୀରରେ ଧୋଇଲେ ଖଣ୍ଡରେ ପୋତିଲେ
ନିମ୍ବ କି ମଧୁର ହୋଇବ ?
ସେତେ ଆଦରରେ ବୁଝାଇ କହିଲେ
ପରକି ଆପଣା ହୋଇବ ?

———

ତାକ ନାମ ଯାର ଯାମିନୀ
ତାକୁ ମୁଁ କହେ କାମିନୀ ଧାମିନୀ
ସ୍ୱରୂପ ତାର ଫିଟିବ ଯେବେ
ଦ୍ରୁତ ପଦ କ୍ଷେପେ ଅଙ୍ଗୁ ଝଙ୍କାରେ
ଝମ୍ ଝମ ଝମ୍ ଶୁଭିବ ତେବେ
ବରଷା ବରଷିବ ଘନା ମେଘେ ତାର ଆନନ୍ଦ
ସେ ଦେଖିବ କୁହ୍ନୀର ଅଗ୍ନିକୋଣେ ଚମ୍ପକ ଫୁଟିବ
ବାସ ମହକିବ ଧନ୍ୟ ଧନ୍ୟ କହିବେ ସଜନେ
ସେହି ମୋର ଯାମିନୀ
ସେ ଗୁଣ ଅର୍ଜିବ ଦିବସ ଯାମିନୀ
ସୌରଭ ଫୁଟିବ ଦିବସ ଯାମିନୀ
ସେହି ମୋର ଯାମିନୀ ନାଚୁଣୀ
ଅନ୍ଧ ମୁହିଁ ତାହା ନାଚରେ
ଫିଟିବ ମୋ ଆଖି ତୋରା ହୋଇରେ
ଦେଖିବି ଦେଖିବି ମୋ ନାଚୁଣୀର ନାଚ
ଦେଖିବ ଦେଖିବ ମୁହିଁ
ତାହା ହୋଇ ବାହା ହୋଇ



ରସ କଳିକା —

କଥା ପ୍ରସଙ୍ଗ ପର୍ଯ୍ୟେ ଶବ୍ଦଜନ ମତ
ଉତ୍ତମ କଥା ପ୍ରସଙ୍ଗ ବୋହିବଇ ବୋଲନ୍ତି ଯେ ।
ସମୁଦ୍ରଗ୍ରାସେ ଅଶୁଦ୍ଧ କି ହୁଏ ସୁଧାକର
ଆପଦରେ କରନ୍ତି ତହିଁ ଅମୃତ ଆହାର ଯେ ।

×          ×          ×

କଟରେ ଥିଲା ମାଳା ଦୋଲୁଥିଲା ଗ୍ରାମ ଗ୍ରାମ
ସେ ଝଢ ବନ୍ଧୁବଚନେ ଭାଙ୍ଗିଲା ହୋଇ ଭ୍ରମ ।

+          ÷          +

ପିକ କୁହୁ କୁହୁ କରେ ସେ ତରୁ ଡାଳରେ ବସି
କାମ କୁହୁ ଘୋଷି ଯାଉଛି କାମଚିତ୍ତରେ ଆସି ।

———

ଛୁଇଁଛି, ଛୁଉଁଛି, ଛୁଇଁ ଛୁଇଁ ଛୁଇଁ ହେଉ ନାହିଁ
ଧରା ଦେଉଛି ସେ ମୋତେ, ପୁଣି ଧରା ଦେଇ ଦେଉ ନାହିଁ
ଶିଶୁର ଆଖିରେ ନାଚୁଛି ଚଳ ଚଳ ଢଳ ଢଳ
ଗୃହାଣୀ
ଆତ୍ମାର, ମନର ପୁଣି ଅନ୍ୟର
ଯୁବକ ଯୁବତୀର ବ୍ୟବହାରେ, ଅଧା ବର୍ତ୍ତମାନ ଭୁଲି
ଆତ୍ମ ପର, ଭୁଲି ଏକ ହେବାର
ଏହାଯେ ଆତ୍ମୀୟତା, ବା ଅନାତ୍ମୀୟତା, ଛୁଇଁ ଛୁଇଁ
ହୁଏ ନାହିଁ ।
ଏହା ହିଁ ତ ଆଧ୍ୟାତ୍ମିକତା ।
ମନର ମିଳନ ନାହିଁ—ଧନରେ କୋଠାରେ ନାହିଁ
ଜୀର୍ଣ୍ଣ କୁଟୀରେ ଯାପିବ ଜୀବନ, ଦେବେ ସେ

ଅବ ଚାହିଁ,
ନାହିଁ ମନ ମୋର ଲାଗି ଯାଉଛି—ଏହିର
'ଆଧ୍ୟାତ୍ମିକ ଭୂଇଁ

---

ଏହି ଦେଶକୁ ମିଳିଛି ସତ୍ୟ ଅସତ୍ୟର ଭେଦରେ ସୁଧା
ଏହି ଦେଶକୁ, ଏହି ବେଦକୁ, ଏହି ଭେଦକୁ,
ମାନବ ଧର୍ମ ଆନେ, ଏଣୁ ସକଳ ମାନବରେ
କରିବୁଁ ଆପଣାର,
ଆପଣାକୁ ମିଳାଇ ତାଙ୍କର ଭିତରେ
ସତ୍ୟ ଅସତ୍ୟର ଏହି ମାନବ ଭୂଇଁରେ ।
ମିଳିବୁ, ମିଳାଇବୁ, ସକଳ ଜନେ,
ଆପ ଶାନ୍ତ, ଆପ ମଧୁର, ମୁଗ୍ଧ ହେଉଛେ ଜନ,
ଆପ ପ୍ରାଣ ପ୍ରିୟ, ପ୍ରିୟ ମୋର ନୟନରଞ୍ଜନ
ସକଳ ଆର୍ତ୍ତିର ବନ୍ଧୁ, କରୁଣା କରିବ ଦୀନଜନ ।
ବାଣ୍ଟି ବି ଦେଉଛି, ଗୋଟାଇବ ତାର ଶତଗୁଣ
ସକଳ ଠାରୁ ଜାଣି,
ଏହିପରି ଆନନ୍ଦ, ମଧୁର କଲ୍ୟାଣ ଜୀବର ଜୀବନ,

---

ତେବେ କାହିଁକି ତୁ ଏତେ ସବୁକୁ
ତାହାକୁ ହିଁ ପାଇବା ପାଇଁ
ପାଇବୁ ପଣ୍ଡା ତାକୁହିଁ ଭଲ ପାଇବୁ ଜୀବନ ଭର
ଏହି କଥା — ଏହା ସତ୍ୟ, ସୁନ୍ଦର ଯାହା
ତେଣୁ କହେ ମୁଁ ତୋତେ—କଲ୍ୟାଣ ଖୋଜିବୁ

ତୋହର ନିଜ ଭିତରେ ।
ଯାହା ପାଇଲୁ ଯାହାକୁ ପାଇଲୁ, ସେହି ଥରେ
ମୁଗ୍ଧ ହୋଇ ରହୁ ସେବା କରିବୁ ଜୀବନ ଭର
ଏହାହିଁତ ବୃତ୍ତାନ୍ତ ଶହର—
ଏହାଇ ସତ୍ୟ, ନୁହେଁ କି ତୋହର ?
କହ ତୋତେ କହ ଜୀବନଟାକୁ ଆଜି ନ ଦହ,
ଧୂଷ ଘାବ ଏତେ—ସେହି ଜଡ଼ିକ ପାଇଁ
ହିଁ, ହିଁ ମା, ଶାନ୍ତ ରହ, ଏଥିର କଲ୍ୟାଣ
କରୁଛି ତୋତେ ମୁହିଁ ।
ଶୁଖି ଯାଉଛି କେତେ ଧୂରୁଣା ଅନ୍ତର
ଭାଙ୍ଗି ମାରୁଛି ପୁଣି ତହିଁ କେତେ କଅଁଳ
ଅନ୍ଧ ତହିଁ ରହୁଛି ଭରି କେତେ କଷ୍ଟ ଟିକ ଟିକ
ଜୀବନଟା କଣ ଖାଲି ସବୁ ମରଣ ?
ନା, ନା କେତେ କଷ୍ଟ ତହିଁ ରହିଅଛି ଭରି ।

———

ପଲକି ବିନମ୍ର ଆଖିରେ ଏ କେଉଁ ଭାବନା ଖେଳେ
ଦ୍ୱୈତ ପଥର ଯାତ୍ରୀ ହେବାପାଇଁ—
ଏକାକୀ କେହି ରହି ନପାରଇ—
ସୃଷ୍ଟିର ଅପରୂପ ମାୟା—
ନରନାରୀ ପହିଁ—
ଆସେ ଯାଏ, ପ୍ରୀତି ବଢ଼େ, ଫୁଲକଢ଼ି ଦଶ,
ଫଳ କି ଦେଖାଦେବ ନାହିଁ ?

———

ତରଙ୍ଗିଣୀ ତରଙ୍ଗରେ ମୁହିଁ ଆନନ୍ଦେ ଭାସେ ।
ସେହି ତରଙ୍ଗିଣୀର ସଙ୍ଗ ମୁହିଁ ଚାହେଁ ମହା ଉଚ୍ଛ୍ୱାସେ
ସାଗର ସଙ୍ଗମେ
ବନ୍ଧ ମେଳେ ମୁଁ ଭାସେ ।
ଗିରିବନ ବନ୍ଧି ଅସିଛି ସେହି ତରଙ୍ଗିଣୀ
ମୋର ଛନ୍ଦ ନାଚେ
ନରୁଏ ପୁଣି ସେ ମୋତେ କେତେ ଦେବ, ଯାଚେ
ସେ କେବଳ ଯାଚେ ।
ମୁଁ ଭୁଲିସବୁ ଆପଣାକୁ ଦିଏଁ ସେହି ତରଙ୍ଗିଣୀରେ ମିଶାଇ
ସେହି ତରଙ୍ଗିଣୀ ମୋର ଚିରନ୍ତନୀ, ଯେହେତୁ ଚିରନ୍ତନୀ ।

———

ଗତ ତ ହୋଇଛି ଅନେକ
କେହି ନାହିଁ ପାଶେ ମୁଁ ଉନ୍ମୁଖ କାହିଁ ପାଇଁ ।
କେହି ନୁହଇ
ଭାବୁଛି ଖାଲି କେହି ତ ଆସିଲେ ନାହିଁ
ଥିଲେ ତ ଏତେ ମୋହର ପ୍ରୀତି ଦାୟିନୀ
କାହିଁ ଗଲେ ସେ—ମୁଁ ପଡ଼ିଛି ଏକାକୀ
ନଟେ ତାର ଦଶୁନାହିଁ—
ଅନ୍ଧାର ଘରର ଅଳିଅ ଜାଳି ବସିଛି ଏକାକୀ ମୁହିଁ
ସନ୍ଧାନ କାର ମିଳିବ ବୋଲି କହି ନୁହଇ
ଆଜି ସେହିମାନେ ଯେଉଁ ମାନେ ଦେଇଥିଲେ ମୋତେ ସୁଖର
ଆସ୍ୱାଦନ

କେହି କି ଏହି ରାତରେ ଆସିବେ ନାହିଁ ମୋର କଥା
ମୁଁ କି ଜାଣିବି ତାହାର ମର୍ମ
ଗାଉଥିଲି ମରମ ମରମ ଏହି ଦୁଃଖର ଗୀତ
ସଂସାର ପଥରେ ନାହି କି କେହି ମୋର ଆପଣର
ଆଜି ରାତି ଏହିପରି ରହିବି ମୁହିଁ ଘରି ଘର କାନ୍ଦି କାନ୍ଦି
ଅମାନିଶେ ମେଘ ଘୋଟିଛି ଆଜି
ଆଉ ବାରଣ ନେଉସିନ, ମେଘ ଗରଜର, ଗରଜନ ଶେଷ ନେହି
ମୁଁ ଉତ୍କଣ୍ଠାରେ ହୋଇ ଡାକୁଥିବି କାହାକୁ କେହି କି ଆସିବେ ନାହିଁ ?

ଗଙ୍ଗା, ସିନ୍ଧୁ, ବ୍ରହ୍ମପୁତ୍ର
ତିନି ଭଇ ଭଉଣୀ
ଜନ୍ମି ଏକ କଣ୍ଠୁଁ ତିନିରୁଁ
ଗଲ ଚାଲି ପୂର୍ବ, ପଶ୍ଚିମ, ଦକ୍ଷିଣ ହୋଇ,
ଚାଲିଛ ସେବି କେତେ ଜନପଦ ।
ଧନ୍ୟ ତୁମେ ତିନି ନଦୀ,
ଆପଣାକୁ ଭୁଲି କି ସଙ୍ଗୀତ ଗାଇ,
ଅମର ପଥେ ଯାଉଛ ବହି,
ମୁଁ ଭାବୁଛି ବସି—ତୁମ ତିନିଙ୍କୁ,
ଦେଖିଛି ତ ମୁହିଁ,
ଆହୁରି ଦେଖିନି, ତୁମ ଅନ୍ତରରେ ପଶି,
ମୋ ଅନ୍ତରେ ଧାଇଁ,
ତୁମେ ଗଙ୍ଗା, ସିନ୍ଧୁ, ବ୍ରହ୍ମପୁତ୍ର,
ରହିଛ ତିନି ଭଇ ଭଉଣୀ ହୋଇ,
କରି ଖୋଜୁଛ କାହାକୁ ?

ଖୋଜୁଛ କେତେ ଜଣ ତାଙ୍କୁ ପାଇଥାନ୍ତି
ଦିନ ଘଡ଼ି ଧରି, ବରଷ ବରଷ ମାସ ମାସ,
ଯୁଗ ଯାଉଛି ବହି ।
ତଥାପି ତାହା ଖୋଜୁଛ ସେ କାହିଁ ?
ଅଜଣା ବାଟରେ ତାହାକୁ ଯାହାକୁ ଆଜିବ ଏତେ
ସେହି ସବୁ ସିନା ତୁମର ଆନନ୍ଦ ଦାୟକ, ବନ୍ଧୁ ହେମନ୍ତ
ତାଙ୍କୁଇ ଧରି ତାଙ୍କର ଗହଣେ
ବୃଳ ପଥ ବାନ୍ଧି
ଯାଇବ ଅବଶ୍ୟ ତବ ଛଳ ବହି
ଆନନ୍ଦ ଉତ୍ସ
ନନ୍ଦନ୍ତି ସୁଖ ସାଥୀ ହେବେ ଅନନ୍ତ ତୃପ୍ତ ।

———

ସୁଖ—
ସେ କଣ ?
ସୁଖ—
ଜୀବନ ଯାକ
ଖୋଜୁଛି ମୁହିଁ ଧାଇ ନାହିଁ କି ?
ପାଇଛି ଅନେକ ଥର,
ଆଜି ପାଇଛି ଚେତେ ଥର
ଧନ୍ୟ କହିଛି ତାହାକୁ
ଯିଏ ଦେଇଚି ସୁଖ
ଧନ୍ୟ କହିଛି ତାହାକେ